# ଇଉରପ ସୂର୍ଯ୍ୟ ଉଇଁ

ହୃଦୟ କୁମାର ଶତପଥୀ



ଏଇ ଯେ ସୂର୍ଯ୍ୟ ଉଇଁ : ନାଟ୍ୟକାର : ବିଜୟ କୁମାର ଶତପଥି,
ପ୍ରକାଶକ : ସଦାଶିବ ରାଉତ, ବର୍ଣ୍ଣମାଳା ପ୍ରକାଶନୀ, ରାଜା ବଗିଚା, କଟକ-୯
ପ୍ରଚ୍ଛଦ : କେ. ସରକାର, ମୁଦ୍ରଣ : ସଂଯୁକ୍ତା ପ୍ରିଣ୍ଟର୍ସ, କଟକ-୯, ପ୍ରଥମ
ସଂସ୍କରଣ : ୨୦, ନଭେମ୍ବର ୧୯୮୭ ମୂଲ୍ୟ : ପନ୍ଦର ଟଙ୍କା

**Eai Je Surya Uain (Drama) by Bijoy Kumar Satpathy,**
Publisher : Sadashiv Rout, Barnamala Prakashani,
Raja Bagicha, Cuttack-753009, Orissa (India), Cover
Design : K. Sarkar, Printed at : Sanjukta Printers,
Cuttack-9, First Edition : 20 November, 1987,
**Price : Rs. 15.**

ଡାକ୍ତର ଶ୍ରୀଯୁକ୍ତ ସୁବୋଧ ପ୍ରହରାଜ, ଏମ୍.ଡି ମହୋଦୟଙ୍କ

କର କମଳରେ

ଯାହାଙ୍କ ଚିକିତ୍ସାର କୁହୁକ ସ୍ପର୍ଶ ମତେ

ଏକ କଠିନ ବ୍ୟାଧି

କବଳରୁ ମୁକ୍ତ

କରିଥିଲା ।



# ମଂଚକର୍ମ

## ନାଟକ – "ଏଇ ସେ ସୂର୍ଯ୍ୟ ଉଏଁ"

ରଚନା—ଅଧ୍ୟାପକ ବିଜୟ କୁମାର ଶତପଥୀ
ନିର୍ଦ୍ଦେଶନା -- ଅଧ୍ୟାପକ ପରେଶ ଦାସ
ସଙ୍ଗୀତ ଓ ସ୍ୱର ସଂଯୋଜନା – ଅକ୍ଷୟ
କଳା ନିର୍ଦ୍ଦେଶନା – ଜୟନ୍ତ
ଶବ୍ଦ ଓ ଆଲୋକ ସଂପାତ – ଫ୍ରେଣ୍ଡସ୍ ମାଇକ ସର୍ଭିସ୍ ଓ
ନିଖିଲ ଦା
ସାଜସଜ୍ଜା, ବେଶ ପୋଷାକ – ଟାଙ୍ଗୁଲି
ସ୍ମାରକ – ସୁଧାଂଶୁ, ନିଶାକର
ସହଯୋଗିତା—ମଧୁସୂଦନ, ସଂଗ୍ରାମ, ବିଭୂଦତ୍ତ, ସୁଧାକର,
ପରେଶ, ପ୍ରସନ୍ନ

ପ୍ରଯୋଜନା ଓ ଉପସ୍ଥାପନା—ଜାତୀୟ କବି ବୀର କିଶୋର
ମହାବିଦ୍ୟାଳୟ ନାଟ୍ୟ ସଂସଦ
ତା ୩।୨।୮୫

## ରୂପକାର ଗୋଷ୍ଠୀର ପରିଚୟ—

ବୀରାଦିତ୍ୟ/ଆଦିତ୍ୟ ପ୍ରତାପ—ବିଶ୍ୱକେଶ
ଚଣ୍ଡାଦିତ୍ୟ/ମାନେଜର – ମନମୋହନ
ତ୍ରିଲୋଚନ/ଲୋଚନ ମିଶ୍ର – ନିର୍ମଳ
ସୂର୍ଯ୍ୟସେନ/ଇନ୍‌ସ୍‌ପେକ୍ଟର – ରବୀନ୍ଦ୍ର
ଶ୍ରୀକଣ୍ଠ/କଣ୍ଠଦାସ – ଅକ୍ଷୟ
୧ମ ପାରିଷଦ/ମାନଧାତା—ପ୍ରଦୀପ୍ତ
୨ୟ ପାରିଷଦ/ଜୟୀ—ବିକ୍ରମ
ସାଧୁଚରଣ/ବିଧାୟକ— ମନୋଜ
ରକ୍ଷୀ/କନେଷ୍ଟବଲ—ସନ୍ତୋଷ
ଦୀନହୀନ ଭଗ୍ନ ସ୍ୱାସ୍ଥ୍ୟ ବ୍ୟକ୍ତି—ସମୀର
ଡ଼ଗର—ଚନ୍ଦ୍ରମଣି
ମାଳବିକା/ମାଳତୀ – ଲିଲିମା
କାଦମ୍ବିନୀ/କାମିନୀ – ଝୁନୁ
ପାଲାଦଳରେ – ନନ୍ଦୀ ଓ ତାଙ୍କ ସାଥୀମାନେ
ସମୂହ ସଙ୍ଗୀତରେ-- କ୍ଷୀରୋଦ, ଜୟନ୍ତ, ଧରଣୀଧର, କହ୍ନେୟା-
ଲାଲ, ମଧୁ, ମୋହନ, ପ୍ରସନ୍ନ ପ୍ରଭୃତି

ଲେଖକଙ୍କର ଅନ୍ୟାନ୍ୟ ପୁସ୍ତକ —

ନାଟକ –

ଫସିଲ ନିଦ୍ରାଭଙ୍ଗ
କଂସର ଆତ୍ମା
କ୍ଷୁଧିତ ସରୀସୃପ

ସମାଲୋଚନା –

ସାରସ୍ୱତ ମୂଲ୍ୟାୟନ
କଲ୍ଲୋଳ ଓ ଚନ୍ଦ୍ରମଣି ଏକ ଦୃଷ୍ଟିପାତ
ଔପନ୍ୟାସିକ ନିତ୍ୟାନନ୍ଦ

ସଂପାଦନା —

କାହାଣୀ ସ୍ତବକ
ବିପ୍ଳବର ବାର୍ତ୍ତାବହ ଜାତୀୟ କବି ବୀରକିଶୋର



# ନିଜସ୍ୱ ସଂଳାପ

'ଏଇ ଯେ ସୂର୍ଯ୍ୟ ଉଏଁ' ନାଟକ ଲେଖା ହୋଇଥିଲା ୧୯୮୩ ମସିହାରେ । ଏଥିରେ ଆମର ଦୁଇଗୋଟି ପାରମ୍ପରିକ ଲୋକ ନାଟ୍ୟଶୈଳୀକୁ ଗ୍ରହଣ କରି ମଞ୍ଚରେ ଏକ ପରୀକ୍ଷା କରିବା ପାଇଁ ମୁଁ ଚାହିଁଥିଲି ।

ନାଟକର ପ୍ରଥମ ପର୍ବରେ କଥାବସ୍ତୁ ଉପସ୍ଥାପନ କରାଯାଇଛି ପାଲାର ଆଙ୍ଗିକ ମାଧ୍ୟମରେ । ପ୍ରଥମ ପର୍ବର ବିଷୟବସ୍ତୁ ରଜା, ରାଜୁଡ଼ା ଅମଳର. ତେଣୁ ସଂଳାପ, ବେଶ ଭୂଷା ଓ ମଧ୍ୟେ ମଧ୍ୟେ ସଙ୍ଗୀତ ସଂଯୋଜନାରେ ଯାତ୍ରାର ଟେକନିକ୍‌କୁ ଅନୁସରଣ କରାଯାଇଛି । ତେଣୁ ଯାତ୍ରାଭଳି ଏଥିରେ ଜାଣି ଜାଣି ମେଲୋ— ଡ୍ରାମାଟିକ୍ ସିକ୍ୱେନସ୍ ଓ ସେଣ୍ଟିମେଣ୍ଟ ସୃଷ୍ଟି କରାଯାଇଛି । କେବଳ ଦରିଦ୍ର ଉପରେ ଅତ୍ୟାଚାର ନୁହେଁ, ଖିଆଲି ସମ୍ରାଟର ଶାସନକାଳରେ ଲେଖକ ଓ କଳାକାରର ସ୍ୱାଧୀନତା କିପରି ବିପର୍ଯ୍ୟସ୍ତ ହୋଇଛି ତାହା ମଧ୍ୟ ନାଟକରେ ପ୍ରତିଫଳିତ ।

ଦ୍ୱିତୀୟ ପର୍ବ ଗଣତନ୍ତ୍ର ଶାସନର କାଳ । ଏଠି କର୍ଣ୍ଣପୁର କାରଣପୁରରେ ରୂପାନ୍ତରିତ ହୋଇଛି । ପ୍ରଥମ ପର୍ବର ଅର୍ଥାତ୍ ରାଜ ରାଜୁଡ଼ା ଯୁଗର ଚରିତ୍ରମାନେ ଆସିଛନ୍ତି ମଞ୍ଚକୁ ବର୍ତ୍ତମାନକାଳର ଚରିତ୍ର ସବୁ ହୋଇ । ନାଁରେ ଯାହା କିଛି ପରିବର୍ତ୍ତନ ହୋଇଛି ମାତ୍ର ସେମାନଙ୍କ ସ୍ୱରୂପ ଓ ଆଚରଣ ଠିକ୍ ଏକାଭଳି । କେବଳ ପ୍ରଥମ ପର୍ବର ପ୍ରଜାମଣ୍ଡଳ ନେତା ସାଧୁଚରଣ ଓ ଦ୍ୱିତୀୟ ପର୍ବର ବିଧାୟକ ସାଧୁଚରଣ ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ପୂର୍ବର ସାଧୁଚରଣ ଜନସାଧାରଣଙ୍କ ନେତୃତ୍ୱ ନେଇ ରାଜତନ୍ତ୍ରର ଅବସାନ ଘଟାଇ ଥିଲେ କିନ୍ତୁ ଏବେକାର ସାଧୁଚରଣ ଜନସାଧାରଣଙ୍କ ଭୋଟ ବଳରେ କ୍ଷମତାରେ ଆସୀନ । ସେ ପୁଣି କ୍ଷମତା ଲୋଭୀ ଅସଦ୍ ଚରିତ୍ରର ବ୍ୟକ୍ତି । ଏହା ହୁଏତ ପରିବର୍ତ୍ତିତ ମୂଲ୍ୟବୋଧ ।

ଦ୍ୱିତୀୟ ପର୍ବରେ କାରଣପୁରର ହତ୍ୟାକାଣ୍ଡକୁ ଉପସ୍ଥାପିତ କରିଛନ୍ତି ଦଳେ ଲୋକ ଯେଉଁମାନେ ଏବେବି ଆମର ହାଟ ବଜାରରେ କୌଣସି

ଶୃଙ୍ଖଳ୍ୟକର ଘଟଣାକୁ ଗୀତଗାଇ ପରିବେଷଣ କରିଥାନ୍ତି ଓ ସେ ସଂପର୍କରେ ଚଟିବନ୍ଧି ଛପାଇ ମଧ୍ୟ ବିକିଥାନ୍ତି । ଏହା ମଧ୍ୟ ଆମ ଲୋକ ସଂଗୀତର ଏକ ପରଂପରା । ମୋଟ ଉପରେ ନାଟକରେ ଅନ୍ୟାୟ ଶାସନତନ୍ତ୍ର ବିରୁଦ୍ଧରେ ବିଦ୍ରୋହର ସ୍ୱର ମୁଖ୍ୟ ବିଷୟ ରୂପେ ସ୍ଥାନ ପାଇଛି ।

ଉକ୍ତ ନାଟକଟିର ପ୍ରଯୋଜନା ଓ ଉପସ୍ଥାପନା ପାଇଁ ମୁଁ ଜାତୀୟ କବି ବୀର କିଶୋର ମହାବିଦ୍ୟାଳୟର ଅଧ୍ୟକ୍ଷ ଶ୍ରୀଯୁକ୍ତ ନିତାଇ ଦାସ ମୁଖାର୍ଜୀ ଓ ଅଧ୍ୟାପକ, ଅଧ୍ୟାପିକା ମାନଙ୍କ ନିକଟରେ କୃତଜ୍ଞତା ସ୍ୱୀକାର କରୁଛି । ସେମାନଙ୍କ ଅକୁଣ୍ଠ ସାହାଯ୍ୟ ସହଯୋଗ ବିନା ଏହା ମଞ୍ଚସ୍ଥ ହୋଇ ପାରିନଥାନ୍ତା। ସର୍ବୋପରି ଅଧ୍ୟକ୍ଷ ଶ୍ରୀଯୁକ୍ତ ମୁଖାର୍ଜୀ ପ୍ରାଧ୍ୟାପିକା ଡକ୍ଟର ରେଖା ମହାନ୍ତି. ଅଧ୍ୟାପକ ନବକିଶୋର ପୃଷ୍ଟି ଏ ନାଟକର ପ୍ରଯୋଜନା ପାଇଁ ଯେଉଁ ଗୁରୁତ୍ୱପୂର୍ଣ୍ଣ ପରାମର୍ଶମାନ ଦେଇଛନ୍ତି ସେଥିପାଇଁ ସେମାନେ ମୋର ଚିରଦିନ ମନେ ରହିବେ । ନାଟ୍ୟ ସଂସଦର ସଂପାଦକ ତଥା ମୋର ଶ୍ରଦ୍ଧେୟ ଗୁରୁ ଶ୍ରୀମାନ ଅକ୍ଷୟ ମହାନ୍ତି ଏହାର ସଙ୍ଗୀତ ନିର୍ଦ୍ଦେଶନା ଓ ପରିଚାଳନା ଦାୟିତ୍ୱ ନେଇଥିବାରୁ ସେଥିପାଇଁ ମୁଁ ତାଙ୍କୁ ସାଧୁବାଦ ଜଣାଉଛି ।

ଇତି

ବିନୟାବନତ

ବିଜୟ କୁମାର ଶତପଥୀ



# ଉପୋଦ୍‌ଘାତ

[ସମୁଦାୟ ମଂଚଟି ଦୁଇଗୋଟି କୋନ୍‌ରେ ବିଭକ୍ତ । ମଞ୍ଚର ପ୍ରଥମ କୋନ୍‌ରେ ଗଭୀର ଅନ୍ଧକାର ଆଲୋକର ପ୍ରବାହରେ ଧୀରେ ଧୀରେ ଅପସରି ଯାଉଥିଲା । କ୍ରମଶଃ ଅଧିକରୁ ଅଧିକ ସ୍ପଷ୍ଟ ହୋଇ ଆସୁଥିଲା କୋରସର ଲହର । କିଛି ସମୟପରେ ସ୍ୱର ଲହରୀ ବନ୍ଦ ହୋଇଗଲା । ଏହା ମଧ୍ୟରେ ଖୁବ୍ ଦୀନ, ହୀନ, ଦରିଦ୍ର, ଭଗ୍ନସ୍ୱାସ୍ଥ୍ୟ ମଣିଷଟିଏ ଚାଲି ଚାଲି ଧୀରେ ଧୀରେ ଆସୁଥିଲା ମଞ୍ଚ ଉପରକୁ । ଦେହରେ ମନରେ, ତାର କ୍ଲାନ୍ତି, ଅବସାଦ ଓ ନୈରାଶ୍ୟ । ସେ ଯେମିତି ବଞ୍ଚିବାକୁ ଚାହେଁନା ଅଥଚ ବଞ୍ଚିଛି । ଦୁଃଖ ଦୈନ୍ୟର ଅସହ୍ୟଭାର ତା'ର ମଣିଷ ପଣିଆକୁ ଯେମିତି ନୁଆଁଇ ଦେଇଛି । ସେ ଚାଲି ଚାଲି ଆସି ପ୍ରଥମ କୋନ୍‌ର ମଧ୍ୟଭାଗରେ ଅଟକି ଗଲା । ଆଉ ବସିଲା ବି ଖୁବ୍ କଷ୍ଟରେ । କାନ୍ଧରେ ପଡ଼ିଥିବା ଗୋଟିଏ କନା ପୁଟୁଳିଆ ଭିତରୁ ସେ ବାହାର କଲା କିଛି ଖାଇବା ଜିନିଷ । ତାକୁ ସେ ପାଟିକୁ ନେଉଥିଲା, କିନ୍ତୁ ତାର ହାତ ଅଟକିଗଲା ପାଟିପାଖରେ ଯେତେବେଳେ ଶୁଣାଗଲା ସମ୍ମିଳିତ ସ୍ୱରରେ ଜୟ ମହାରାଜାଙ୍କର ଜୟ । ତା' ପରେ କାହାଳୀ -- ମହାରାଜାଙ୍କର ଆସିବାର ସୂଚନା ଓ କନ୍‌ସର୍ଟର ଶବ୍ଦ । ଖୁବ୍ ଗମ୍ଭୀର କଣ୍ଠରେ ଚତୁର୍ଦ୍ଦିଗକୁ ପ୍ରତିଧ୍ୱନିତ କରି ଭାସି ଆସିଛି ମହାରାଜାଙ୍କ ଆଦେଶ । ଲୋକଟିର ହାତରୁ ଖସି ପଡ଼ିଛି ଖାଇବା ଜିନିଷ; ବଡ଼ ବ୍ୟସ୍ତ ବିଚଳିତ ଭାବରେ ସେ ଉତ୍‌କର୍ଣ୍ଣ ହୋଇ ଶୁଣୁଛି ସେ ଆଦେଶକୁ ।]

ମହାରାଜାଙ୍କ କଣ୍ଠସ୍ୱର -- ହୁଁ, ତମେ ବି ଅପରାଧୀ । ତମର ଦାରିଦ୍ର୍ୟ ହେଉଛି ତମ ଅପରାଧର କାରଣ । ତମପରି ଅନେକ ଅପରାଧୀ ମୋ ରାଜ୍ୟରେ ଅଛନ୍ତି । ମୁଁ ଜାଣେ ସେମାନଙ୍କ ମନରେ ଅସନ୍ତୋଷର ନିଆଁ । ସୁଖ ସ୍ୱାଚ୍ଛନ୍ଦ୍ୟରେ

,

ବଞ୍ଚିଥିବା ମଣିଷମାନଙ୍କ ଭିତରେ ନୀରବ ବିଦ୍ରୋହ । ମାତ୍ର ସେ ନିଆଁ ଜଳିବା ଆଗରୁ ମୁଁ ତାକୁ ଲିଭେଇ ଦେବି । ହାଃ—ହାଃ—ହାଃ - ମୁଁ ମହାରାଜ । ଏ ରାଜ୍ୟର ସର୍ବମୟ କର୍ତ୍ତା । କେବଳ ତମେ ନୁହଁ, ତମ ଭଳି ଶତ ଶତ ବ୍ୟକ୍ତି ଆଜି ଠାରୁ ବନ୍ଦୀଶାଳରେ ନିକ୍ଷିପ୍ତ ହେବେ । ବିନା ଖାଦ୍ୟ, ପାନୀୟରେ ତମେ ସବୁ ସେଠି କାଳାତିପାତ କରିବ । ହଁ – ହଁ ବିନା ଖାଦ୍ୟ ପାନୀୟରେ ଏ ରାଜ୍ୟରେ କେବଳ ଅଭିଜାତ ଧନିକମାନେ ହିଁ ରହିବେ । ତମ ପାଇଁ ଏକମାତ୍ର ସ୍ଥାନ ବନ୍ଦୀଶାଳା । ହଁ ବନ୍ଦୀଶାଳା——ବନ୍ଦୀଶାଳା । ହାଃ .. ହାଃ ....ହାଃ .....

[ ପ୍ରତିଧ୍ୱନି ସୃଷ୍ଟି କରି ମହାରାଜାଙ୍କର କଣ୍ଠସ୍ୱର ମିଳେଇଗଲାପରେ ଚାରିଆଡ଼କୁ ଭୟାତୁର ଦୃଷ୍ଟିରେ ଚାହିଁ ଛିଡ଼ାହେଲା ଲୋକଟି । ଏକଡ ସେକଡକୁ ସେ ଧାଇଁଗଲା ବିକଳ ଭାବରେ । ତା' ପରେ ଏକ ନିର୍ଦ୍ଦିଷ୍ଟ ଦିଗକୁ ଚାହିଁ ସେ ଖୁବ୍ ଜୋରରେ ଦୌଡ଼ିବାକୁ ଆରମ୍ଭ କରିଦେଇଥିଲା । ସେ ଦୌଡ଼ୁଥିଲା ଓ ଦୌଡ଼ୁଥିଲା, ତାର ହାତ ଦୁଇଟି ଛନ୍ଦି ହୋଇ ଆଗକୁ ଝୁଲି ପଡ଼ିଥିଲା । ଯେମିତି ରାଜାଙ୍କ ଆଦେଶ ଫଗେ ଫଗେ ସତକୁ ସତ ସେ ବନ୍ଦୀ ହୋଇପଡ଼ିଛି । ତାର ଦୌଡ଼ିବା ସଂଗେ ସଂଗେ ରାସ୍ତା ଯେମିତି ସରୁନି । ଆହୁରି ଅନେକ ରାସ୍ତା । ଗୋଟାଏ ସ୍ଥାନରେ କ୍ଳାନ୍ତ ହୋଇ ସେ ଠିଆ ହୋଇଯାଇଛି । ତା'ପରେ ବସି ପଡ଼ିଛି ମୁଣ୍ଡରେ ହାତ ଦେଇ । ଯେଉଁଠି ଆଗରୁ ବସିଥିଲା ଠିକ୍ ସେଇ ଜାଗାରେ, ମୁହଁରେ ତା'ର ଅନେକ ଦୁଃଖ, କଷ୍ଟ ଏବଂ ଯନ୍ତ୍ରଣାର ଛାପ ।

ସ୍ପଷ୍ଟ ହୋଇ ଆସୁଥିଲା ବାଦ୍ୟଯନ୍ତ୍ରର ଲହର । ଆଲୋକ ପରିବର୍ତ୍ତିତ ହେଲା । ଏସବୁ ମଧ୍ୟରେ ଜଣା ପଡୁଥିଲା ଯେପରି ସମସ୍ତ ଅତିକ୍ରାନ୍ତ ହୋଇଚାଲିଛି । ଯେମିତି ବହୁ କାଳରୁ ବସିଛି ଲୋକଟି । ବାଦ୍ୟଯନ୍ତ୍ରର ସ୍ୱର ଲହର ଠିକ ନୀରବ ହୋଇ ଆସୁଥିଲା ବେଳେ ଶୁଣାଯାଇଛି ସାମାନ୍ୟ ଦୂରରେ ଯେମିତି ଧର୍ମଘଟର ଶୋଭାଯାତ୍ରାଟିଏ ଚାଲିଛି । ଶୋଭାଯାତ୍ରାକାରୀମାନଙ୍କ କଣ୍ଠରେ କୌଣସି ଏକ ବିପ୍ଳବୀ ସଂଗୀତ ଓ ପରେ ସ୍ଲୋଗାନ—''ଆମର ଦାବୀ ପୂରଣ ହେଉ, ମଜଦୁର ଭାଇ ଏକ ହୁଅ ''ଶ୍ରମୀ ମୂଲିଆ—ଜିନ୍ଦାବାଦ'' ପ୍ରଭୃତି । ଯେଉଁ ଦିଗରୁ ଏସବୁ ଆସୁଥିଲା ସେ ଆଡ଼କୁ କାନେଇଲା ଲୋକଟି । ସେ ବି ବେଶ୍ ଉତ୍ତେଜିତ ହୋଇ ପଡୁଥିଲା । ସେଇ

ସ୍ୱରର ତାଳରେ ସେ ବି ଚିତ୍କାର କରିବାକୁ ଚାହୁଁଥିଲା । ମାତ୍ର ସେ ଥିଲା ବାକ୍‌ଶକ୍ତି ରହିତ । ତେବେ ସେ ତା'ର କ୍ରୋଧ ଓ ଉତ୍ତେଜନାକୁ ଅଙ୍ଗଭଙ୍ଗୀ ମାଧ୍ୟମରେ ପ୍ରକାଶ କରୁଥିଲା । ହଠାତ୍ କାହାର ଚିତ୍କାର ଶୁଣାଗଲା—"ପୋଲିସ୍ । ଲାଠି, ଗୁଳି ଫାୟାର' ପ୍ରଭୃତି" । ତା ସହିତ ବନ୍ଧୁକର ଆବାଜ, ପୋଲିସର ହୁଇସିଲ, ଦୌଡ଼ା ଦୌଡ଼ି ଇତ୍ୟାଦିର ଶବ୍ଦ ଶୁଣାଯାଉଥିଲା । ଲୋକଟି ମଞ୍ଚର ସେଇ କୋନ୍‌ର ଗୋଟିଏ କଡ଼ରୁ ଅନ୍ୟ କଡ଼କୁ ପ୍ରାଣ ବିକଳରେ ଧାଇଁ ଚାଲିଛି ଓ କିଛି ସମୟ ପରେ ସେ ପଡ଼ିଯାଇଛି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ । ସେ କ୍ଳାନ୍ତ ହୋଇ ପଡ଼ିଥାଏ ଓ ତା'ର ଦୀର୍ଘଶ୍ୱାସ ବହୁଥାଏ । ପୁଣି ତା'ର ଉତ୍ସାହ ଓ ଉନ୍ମାଦନାକୁ ଗ୍ରାସକରି ଚାଲିଥାଏ କ୍ଳାନ୍ତି ଓ ଅବସାଦ । ଭାସି ଆସିଛି କୌଣସି ବିଚାରାଳୟରେ ଚାଲିଥିବା ମାମଲାର ପ୍ରତିଧ୍ୱନି । ]

ସରକାରୀ ଓକିଲ – ଇୟୋର ଅନର ! ଏ ଲୋକଜଣକ ଘୋର ମିଥ୍ୟାବାଦୀ । ଏ ଚାହୁଁଥିଲା ଶ୍ରମିକ ସଙ୍ଗଠନ ମଧ୍ୟରେ ରହି ସମୁଦାୟ ଫାକ୍‌ଟ୍ରୀର ଧ୍ୱଂସ ସାଧନ ପାଇଁ । ପୂର୍ବରୁ ଏହାର ସଂତ୍ରାସବାଦୀ କ୍ରିୟାକଳାପ ସମ୍ପର୍କରେ ଅନେକ ପ୍ରମାଣ ମିଳିଛି । ଇୟୋର ଅନର । ସେ ପ୍ରମାଣ କୋର୍ଟ ଚାହିଁଲେ ମୁଁ ପେଶ୍ କରିବି ।

(କିଛି ସମୟ ପାଇଁ କୋଳାହଳ)

ଜଜ୍—ଅର୍ଡ଼ର ଅର୍ଡ଼ର ।

ସରକାରୀ ଓକିଲ—ଫାକ୍‌ଟ୍ରୀର କଞ୍ଚାମାଲଗୁଡାକ ଚୋରି କରିବାରେ ମଧ୍ୟ ଆସାମୀ ଅଭିଯୁକ୍ତ । ଗତ ଦୁଇମାସ ତଳେ ଯେଉଁ ସାଂପ୍ରଦାୟିକ ଦଙ୍ଗା ଏଇ ସହରରେ ଘଟିଥିଲା ଏଥିରେ ମଧ୍ୟ ଆସାମୀର ହାତ ଅଛି ।

(ପୁଣି ଶୁଣାଗଲା ଦର୍ଶକ ଗ୍ୟାଲେରୀରେ କିଛି ସମୟ ପାଇଁ କୋଳାହଳ ଓ ଜଜ୍‌ଙ୍କର ଅର୍ଡ଼ର ଅର୍ଡ଼ର ଶବ୍ଦ । )

ଓକିଲ – ଆସାମୀ ସରକାର ବିରୋଧୀ । ସେ ଲୁଣ୍ଠତରାଜ, ଦଙ୍ଗା ପ୍ରଭୃତି କାର୍ଯ୍ୟ-କଳାପରେ ଅଭିଯୁକ୍ତ ।

ଜଜ୍ — (ଗମ୍ଭୀର କଣ୍ଠରେ) ତା ବିପକ୍ଷରେ ଏଇ ସବୁ ପ୍ରମାଣ ଯୋଗୁ ତାଙ୍କୁ ଦଶବର୍ଷ ସଶ୍ରମ କାରାଦଣ୍ଡରେ ଅଭିଯୁକ୍ତ କରାଗଲା । (ଝାସ୍ ମ୍ୟୁଜିକ୍‌ର ଲହର ସମୁଦାୟ ପରିବେଶକୁ ଆଚ୍ଛନ୍ନ କରିଦେଲା । ଠିଆ ହୋଇ ପଡ଼ିଲା ଲୋକଟି । ଆପେ ଆପେ ଛିନ୍ନ ହୋଇ ପଡ଼ିଛି ତା ହାତ ଦୁଇଟି । ସେ ଏବେ ଅଭିଯୁକ୍ତ ଆସାମୀ । ଆଗକୁ ଆଗକୁ ସେ ପାଦ ବଢ଼ାଇ ଚାଲିଛି । ଆଲୋକ ଧୀରେ ଧୀରେ ମଳିନ ପଡ଼ିଯାଉଛି ।)



[ ମଞ୍ଚର ପ୍ରଥମ କୋନ୍‌କୁ ଆଲୋକ ଆସିଛି । ପ୍ରବେଶ କରିଛନ୍ତି ଖୋଲ, କରତାଳ ଧରି ପାଲାଦଳ । ସେମାନେ ସଂଖ୍ୟାରେ ଚାରି । ସେମାନଙ୍କ ମଧ୍ୟରୁ ଜଣେ ଶ୍ରୀପାଲିଆ । ଗାୟକ ଏବେ ମଞ୍ଚକୁ ଆସି ନାହାନ୍ତି । ପାଲିଆମାନେ ମଞ୍ଚରେ ପ୍ରବେଶ କରି ଖୋଲ କରତାଳ ବଜେଇ ବିଭିନ୍ନ ଧ୍ୱନିମାନ କରିଛନ୍ତି ଏବଂ ମଞ୍ଚର ଚତୁର୍ଦ୍ଦିଗକୁ ପ୍ରଦକ୍ଷିଣ କରୁଛନ୍ତି । ଏଠାରେ ଉପସ୍ଥାପନାକୁ ସରସ ଓ ପ୍ରାଣବନ୍ତ କରିବା ପାଇଁ ନିର୍ଦ୍ଦେଶକ ଚାହିଁଲେ ପାଲିଆମାନଙ୍କର ସାହାଯ୍ୟରେ ହାସ୍ୟରସ ପରିବେଷଣ କରିପାରନ୍ତି । ଯେମିତି ପାଲିଆମାନଙ୍କ ମଧ୍ୟରୁ ଜଣେ ମଞ୍ଚର ଚତୁର୍ଦ୍ଦିଗ-ପ୍ରଦକ୍ଷିଣ କଲାବେଳେ ଅନ୍ୟ ଜଣେ ପ୍ରଶ୍ନ ପଚାରିବ—"ଏ କିଏ ଜାଣିଛ ? ଏ ହେଉଛନ୍ତି ହାଡ଼୍‌ମଲିକେ । ଶ୍ୱଶୁର ଘରକୁ ଯାଇଥିଲେ । ଆଜି ଆସିଛନ୍ତି । ସଞ୍ଜ ଏଣେ ହୋଇଗଲାଣି । ଘରକୁ ଧପାଉଛନ୍ତି, ତାଙ୍କୁ ଟିକେ ବେଶି ବେଶି ଚଲେଇଦିଅ । ତା ପରେ ସେ ବିଭିନ୍ନ ଅଙ୍ଗଭଙ୍ଗୀ କରି ଚାଲିବେ – ସେଇ ତାଳରେ ବାଦ୍ୟ ବାଜିବ ଇତ୍ୟାଦି । ଏହାପରେ ଶ୍ରୀପାଲିଆ ଆରମ୍ଭ କରିବେ – ]

ଶ୍ରୀପାଲିଆ – ସାଥି ରହିଯା । ଆଜି ପାଲାନୁଷ୍ଠାନର ପ୍ରଥମ ଦିନ । ପାଲାନୁଷ୍ଠାନର ଏଇ ପ୍ରଥମ ଦିନରେ ବାଗ୍‌ଦେବୀ ଶାରଳାଙ୍କ ସ୍ତୁତିଟିଏ ଗାନକରି ଆମେ କର୍ତ୍ତବ୍ୟ ପଥରେ ଆଗେଇବା ।

(ସେ ତାଙ୍କ ସଂଳାପ ଗୀତଭଳି ଲମ୍ବେଇ କହୁଥିବେ ଓ ଅନ୍ୟମାନେ ପାଳି ଧରୁଥିବେ ।)

ଜଣେ ପାଲିଆ — ତା ହେଲେ ହେଇଯାଉ ।

ଅନ୍ୟମାନେ — ହଁ ହେଇଯାଉ ।

ଶ୍ରୀପାଲିଆ — ମା'ଗୋ ଶାରଳା, ଶାରଳା
କଣ୍ଠେ ମୋର କରି ଖେଳା ଗୋ, ସାରଳା ।
ଝଙ୍କଡ଼ ବାସିନୀ ମା'ଗୋ ଉତ୍କଳ ଭାରତୀ
ପାଦେ ତୋର ରହିଥାଉ ସଦା ମୋର ମତି ।
ମା'ଗୋ ଶାରଳା, ମା'ଗୋ ଶାରଳା ···

କଣ୍ଠେ ମୋର ବସିକର ଖେଳ ଗୋ···ଶାରଳା
ସିଂହ ବାହିନୀ ମାଗୋ ବର ପ୍ରଦାୟିନୀ
ଦେଖାଦିଅ ବାରେ ମା'ଗୋ ଜଗତ ଜନନୀ ।
ମା'ଗୋ ଶାରଳା ··

(ଶ୍ରୀପାଳିଆ ନୃତ୍ୟ ଭଙ୍ଗୀସହ ଏସବୁ ଗାନ କରୁଥିବା ବେଳେ ଅନ୍ୟମାନେ ପାଳି ଧରୁବେ)

ଶ୍ରୀପାଳିଆ—(ସଙ୍ଗୀତ ଶେଷ କରି) ଉତ୍କଳ ଭାରତୀ ଶାରଳା ଦେବୀଙ୍କୁ କୋଟି କୋଟି ପ୍ରଣାମ । ତାଙ୍କର ଦିବ୍ୟ ପ୍ରସାଦରୁ କୃଷକ ସିଦ୍ଧେଶ୍ୱର ପରିଡ଼ା ମହାକବି ନାମରେ ଆଖ୍ୟାୟିତ । ଉପେନ୍ଦ୍ର, ଅଭିମନ୍ୟୁ, କବିସୂର୍ଯ୍ୟ ଓ ରାଧାନାଥ ପ୍ରଭୃତି ଉତ୍କଳର ବିଶିଷ୍ଟ ବରିଷ୍ଠ କବିଗଣଙ୍କ ଉପରେ ତାଙ୍କର ଦିବ୍ୟ କୃପା ଝରି ପଡ଼ୁଛି । (ପୁଣି ଗାଇଲେ)

ମାଗୁନାହିଁ ଧନ ମାନ ବା ସମ୍ମାନ
ସଂସାର ସାଗର ତାରଣ କାରଣ
ମା'ଗୋ ଶାରଳା··············· ।

(ଗାୟକ ପ୍ରବେଶ କରିଛନ୍ତି । ବାଦ୍ୟଧ୍ୱନି ଓ ପାଳିଆମାନଙ୍କ କଣ୍ଠସ୍ୱର ନୀରବ ହୋଇଯାଇଛି । ପ୍ରଥାନୁଯାୟୀ ଗାୟକ ମଞ୍ଚର ଗୋଟିଏ ଦିଗରେ ଠିଆହୋଇ ବନ୍ଦନା ଗାନ କରିଛନ୍ତି । ତାପରେ ସେ ବୋଲିଛନ୍ତି ଆଶୀର୍ବାଦାତ୍ମକ ଶ୍ଳୋକଟିଏ । ଶ୍ଳୋକଟି କୃଷ୍ଣଙ୍କ ଉଦ୍ଦେଶ୍ୟରେ ଲିଖିତ ।)

ଗାୟକ—

"ରାମୋ ନାମ ବଭୂବ, ହୁଁ ତଦ୍‌ବଳା ସୀତେତି, ହୁଁ
ତତ୍‌ଭୂବାଚାପଞ୍ଚବଟୀ ବନେ ନିବସତଃ ତା ମା ହରଦ୍‌ ରାବଣଃ
କୃଷ୍ଣେନେତି ପୁରାତନୀ ନିଜକଥା ମାକର୍ଣ୍ଣ୍ୟ ମାତ୍ରେ ରତାନ୍‌
ସୌମିତ୍ରେ କ୍ୱ ଧନୁର୍ଧନୁ ର୍ଧନୁରିତି ପ୍ରୋକ୍ତାଗିର ପାତୁବଃ"।

ସେହି କୃଷ୍ଣ ଶାସ୍ତ୍ରମାନଙ୍କରେ ଏପରି କୀର୍ତ୍ତିତ ସେ ପାଲାନୁଷ୍ଠାର ଉଦ୍ୟୋକ୍ତା ଓ ଜନସାଧାରଣଙ୍କର ମଙ୍ଗଳ କାମନାକରନ୍ତୁ, ଏଠାରେ ଉପସ୍ଥିତ ଶତ ଶତ ପାଲାପ୍ରେମୀ ଦର୍ଶକ ମାନଙ୍କର ମଙ୍ଗଳ କାମନା କରନ୍ତୁ-ବୋଲି ଆନନ୍ଦେ ଏକବାର ହରିବୋଲ·········

(ଖୋଳ, କରତାଳର ସମ୍ମିଳିତ ଶବ୍ଦ ପରେ ଗାୟକ ଗାଇଛନ୍ତି —)

ଜୟ ଜୟ ନାରାୟଣ ନବ ଜଳଧର
ବିପଦ ଭଞ୍ଜନ ପ୍ରଭୋ କରୁଣା ସାଗର ।
କୃପା କରିବାରୁ ନାମ ହେଲା କୃପାସିନ୍ଧୁ
ଦୟା କରିବାରୁ ନାମ ହେଲା ଦୀନବନ୍ଧୁ ।
ଘୋର ବନେ ଡାକ ଦେଲା ମୃଗୁଣୀ ବିକଳେ
ଗଜରାଜ ଡାକଦେଲା ପଶି ଘୋର ଜଳେ ।
ଏ ସବୁ ସଙ୍କଟୁ ତାଙ୍କୁ ରଖିଲ ଆପଣ
ସଙ୍କଟ ତାରଣ ପ୍ରଭୁ ଆହେ ଜନାର୍ଦ୍ଦନ ।
ଭକତର ବନ୍ଧୁ ତୁମେ ବିପଦ ବାନ୍ଧବ
ଗୋପପୁରେ ନାନା କ୍ରୀଡ଼ା କଲ ହେ ମାଧବ ।
ବୀରାଦିତ୍ୟ ରାଜା କଥା କରିବି ଗାୟନ
କିପରି ସେ କରୁଥିଲେ ଶାସନ ବିଧାନ ।
ଅଳଙ୍କାର ଉପମାଦି ଶାସ୍ତ୍ର ଯେ ପୁରାଣ
କଥା ସଙ୍ଗେ କରିବି ମୁଁ କର୍ଣ୍ଣେ ରସାୟନ ।

ସାଥୀ ! ରାଜା ବୀରାଦିତ୍ୟଙ୍କ ପ୍ରସଙ୍ଗ ଆଜିର ପାଲାରେ ଆମର ଆଲୋଚ୍ୟ ବିଷୟ । ସେହି ରାଜା ବୀରାଦିତ୍ୟଙ୍କର ମନମୁଖୀ ଶାସନର କୁ ପରିଣାମ ରାଜ୍ୟବାସୀ କିପରି ଭୋଗ କରୁଥିଲେ ତାହା ଆମେ ଏଠି ବର୍ଣ୍ଣନା କରିବା ।
(ପୁଣି ଗାଇଲେ—)

କର୍ଣ୍ଣପୁର ରାଜ୍ୟ ରାଜା ବୀରାଦିତ୍ୟ
କରୁଥିଲେ ରାଜପଣ
ମନ୍ତ୍ରୀଥିଲେ ତାଙ୍କ ଚଣ୍ଡାଦିତ୍ୟ ବୀର
ଅସମ୍ଭବ ଶକ୍ତିମାନ ।
ରାଜାଙ୍କ ଶାସନେ ପ୍ରଜାଗଣ ସର୍ବେ
ତ୍ରାହି ତ୍ରାହି ଡାକୁଥିଲେ
ରାଜ ଦରବାରେ କାନକୁହା ଦଳ
ରାଜା ମନ ଭୋଗୁଥିଲେ ।
ହତ୍ୟା, ବ୍ୟଭିଚାର, ଦୁର୍ନୀତି, ଅନୀତି
ବ୍ୟାପିଥିଲା ରାଜ୍ୟସାରା

ରାଜକର୍ମଚାରୀ ଧରିବୁଲୁଥିଲେ
ତୋଷାମଦର ପସରା ।

ଏହିପରି ଥିଲା ରାଜା ବୀରାଦିତ୍ୟଙ୍କର ଶାସନ । ତାଙ୍କର ଶାସନ କାଳରେ ପ୍ରଜାଗଣଙ୍କର ଦୁରବସ୍ଥା କହିଲେ ନସରେ । ତୋଷାମଦ କାରୀଙ୍କର ଚାଟୁବାକ୍ୟରେ ରାଜାଙ୍କର ବୁଦ୍ଧି ବିବେକ ହଜି ଯାଇଥିଲା । ରାଜ୍ୟସାରା ବିଶୃଙ୍ଖଳ, କଳଙ୍କ,ଅନୀତି ଯେମିତି ବସା ବାନ୍ଧି ରହିଥିଲା ।

ନିରମାଖି ହୋଇ ପ୍ରଜାଗଣ ସଦା
ଆଖିଲୁହ ପୋଛୁଥିଲେ
ଦୁଃଖଥିଲା ତାଙ୍କ ଚର ସହଚର
ରାଜ ଆଜ୍ଞା ପାଳୁଥିଲେ ।

(ଖୋଳ କରତାଳର ଶବ୍ଦ ମଝିରେ ପାଲିଆମାନେ ପାଳି ଧରୁଥିଲେ । ଏହା ନୀରବ ହୋଇଯିବା ପରେ ଦୂରରୁ ଶୁଭିଲା ଗମ୍ଭୀର କଣ୍ଠରେ– "ଜୟ ମହାରାଜ ବୀରଶ୍ରେଷ୍ଠ-ବୀରବର ମହାଶୂର ମହାପ୍ରତାପୀ ବୀରାଦିତ୍ୟଙ୍କର ଜୟ" ! ସାବଧାନ୍ ! ମହାରାଜ ଦରବାରକୁ ବିଜେ ହେଉଛନ୍ତି ସାବଧାନ୍ !! )

(ଆଲୋକ ପରିବର୍ତ୍ତିତ ହେଲା । ଝୁବ୍ ଅଂଧକାର ନ ହେଲେ ବି ପ୍ରାୟ-ନ୍ଧକାର ମଧ୍ୟରେ ଗାୟକ ଓ ତାଙ୍କ ଦଳ ନିଷ୍ଫଳ ହୋଇଗଲେ ପ୍ରଥମ ଜୋନ୍‌ରେ । ଦ୍ୱିତୀୟ ଜୋନ୍‌ରେ ଆଲୋକ ଆସିଲା ମାତ୍ରେ ପ୍ରଥମ ଜୋନ୍ ଅଂଧକାର ମଧ୍ୟରେ ବୁଡ଼ିଗଲା । ୨ୟ ଜୋନ୍ ଏଣିକି ମହାରାଜ ବୀରାଦିତ୍ୟଙ୍କ ଦରବାର ରୂପେ ବ୍ୟବହୃତ ହେବ । ରାଜା ବୀରଦର୍ପ ଓ ଠାଣିନେଇ ମଞ୍ଚ ମଧ୍ୟକୁ ପ୍ରବେଶ କରୁଥିଲେ । ତାଙ୍କର ପଶ୍ଚାତ୍ ଭାଗରେ ଥିଲେ ମନ୍ତ୍ରୀ ଚଣ୍ଡାଦିତ୍ୟ, ସେନାପତି ସୂର୍ଯ୍ୟସେନ, ବିଦୂଷକ ତ୍ରୈଲୋଚନ ଏବଂ ଦୁଇଜଣ ପାରିଷଦ । ରାଜା ଆସି ତାଙ୍କ ସିଂହାସନରେ ଉପବେଶନ କଲେ । ମନ୍ତ୍ରୀ ସେନାପତି ପାରିଷଦ ପ୍ରଭୃତି ତାଙ୍କର ଚତୁର୍ଦ୍ଦିଗରେ ପଡ଼ିଥିବା ଆସନରେ ବସିଲେ । କେବଳ ଠିଆ ହୋଇ ରହିଲେ ବିଦୂଷକ ।)

ବୀରାଦିତ୍ୟ— ମହାମନ୍ତ୍ରୀ !

ଚଣ୍ଡାଦିତ୍ୟ—ଯଥା ଆଜ୍ଞା ମହିମା !

ବନ୍ଧାଦତ୍ୟ—ରାଜ୍ୟରେ ସବୁ କୁଶଳ ତ ! ମୋର ଉତ୍ତମ ଶାସନ କାଳରେ ମୋ ପ୍ରଜାଗଣ ସୁଖୀ ତ ! ସେମାନେ ବିଳାସ ବ୍ୟସନରେ ଏବଂ ଆମୋଦ ପ୍ରମୋଦରେ ମଜ୍ଜି ରହି କାଳାତିପାତ କରୁଛନ୍ତି ତ ?

ଚଣ୍ଡାଦିତ୍ୟ—ହଁ ମହାରାଜ ସବ କୁଶଳ । ପ୍ରଜାଗଣ ଖୁବ୍ ସୁଖ ଶାନ୍ତିରେ ରହିଛନ୍ତି । ସେମାନଙ୍କର ତିଳାର୍ଦ୍ଧେ ଦୁଃଖ କିମ୍ବା ଅନୁଶୋଚନା ନାହିଁ ।

ବୈଲୋଚନ—ଦୁଃଖ, ଅନୁଶୋଚନାର ପ୍ରଶ୍ନ କେଉଁଠୁ ଆସିଲା ମହାରାଜ ! ଶ୍ରୀମୁଙ୍କ ପରି ସର୍ବଗୁଣ ସମ୍ପନ୍ନ ରାଜା ଚଣ୍ଡାଦିତ୍ୟଙ୍କ ପରି କୁଶଳୀ ମନ୍ତ୍ରୀ, ପୁଣି ସୂର୍ଯ୍ୟସେନଙ୍କ ପରି ଚତୁର ସେନାପତି ଥାଉ ଥାଉ ପ୍ରଜାମାନଙ୍କର ପୁଣି ଦୁଃଖ ଓ ଅନୁଶୋଚନା ? ସେମାନେ ଖୁବ ବିଳାସ ବ୍ୟସନରେ ଅଛନ୍ତି । ମଉଜ ମଜଲିସ୍ ଓ ଫୁର୍ତ୍ତିରେ ସେମାନଙ୍କର ଦିନ ଖାଲି ଗଡ଼ି ଯାଉଛି ମହିମା !

ବୀରଦିତ୍ୟ—ଜାଣେ ବୈଲୋଚନ ଜାଣେ । ମୋ ରାଜ୍ୟର ମନ୍ତ୍ରୀ, ସେନାପତି, ପାରିଷଦ ବର୍ଗ ଆଉ ତମ ପରି ଜଣେ ଉତ୍ତମ ବିଦୂଷକ, ଏମାନେ ମୋ ସହିତ ଥାଉଁ ଥାଉଁ ମୋ ରାଜ୍ୟରେ ଅଶାନ୍ତିର କଳ୍ପନା କରିଯାଇ ନ ପାରେ ବିଦୂଷକ ! ହଁ ସୂର୍ଯ୍ୟସେନ !

ସୂର୍ଯ୍ୟସେନ—ମହିମା !

ବୀରଦିତ୍ୟ—ଯେ କୌଣସି ମୁହୂର୍ତ୍ତରେ ବହିଃ ଶତ୍ରୁର ମୁକାବିଲା ପାଇଁ ଓ ଆଭ୍ୟନ୍ତ-ରୀଣ ବିଶୃଙ୍ଖଳାର ଦମନ ପାଇଁ ଆମର ସୈନ୍ୟବାହିନୀ ପ୍ରସ୍ତୁତ ଅଛନ୍ତି କି ନାହିଁ ?

ସୂର୍ଯ୍ୟସେନ—ସେଥିରେ ତ୍ରୁଟି ନାହିଁ ମହିମା । ଆମର ସୁଶିକ୍ଷିତ ସୈନ୍ୟବାହିନୀ ଯେ କୌଣସି ମୁହୂର୍ତ୍ତରେ ଏସବୁ ଆକ୍ରମଣର ମୁକାବିଲା ପାଇଁ ପ୍ରସ୍ତୁତ ।

୧ମ ପାରିଷଦ - ହଁ ମହାରାଜ । ଏ ଧରିତ୍ରୀରେ ପୁଣି ଆପଣଙ୍କ ଶତ୍ରୁ ! ଆପଣ ଅଜାତ-ଶତ୍ରୁ ମହିମା ! ଆପଣଙ୍କ ବୀରତ୍ୱର ଖ୍ୟାତି ଚତୁର୍ଦ୍ଦିଗରେ ବାଜୁଛି ମହିମା, ଆପଣଙ୍କ ସହିତ ଶତ୍ରୁତା ଆଚରଣ କରିବାକୁ ଏ ମହୀରେ କେହିନାହିଁ ।

୨ୟ ପାରିଷଦ—ଅନ୍ୟରାଜ୍ୟର ରାଜାମାନେ ଆପଣଙ୍କ ପ୍ରଶଂସାରେ ଶତମୁଖ, ଆଉ ପ୍ରଜାମାନେ ! ସେମାନେତ ଆପଣଙ୍କୁ ଦ୍ୱିତୀୟ ବିଷ୍ଣୁ ବୋଲି ଜ୍ଞାନ କରନ୍ତି ।

ଖାରବଦତ୍ୟ—(ଗର୍ବରେ ସ୍ଫୀତ ହୋଇ) ହାଃ—ହାଃ—ହାଃ ଶୁଣୁଚ ବୈରୋଚନ !

ବୈରୋଚନ— ହେଃ—ହେଃ—ହେଃ । ମହାରାଜାଙ୍କ ଗୁଣ ଗାରିମାର ପର୍ଯ୍ୟନ୍ତର ନାହିଁ । ସ୍ୱୟଂ ଶଚୀପତି ପର ଏହା ଦେଖି ଲଜ୍ଜା ପାଇବେ ।

ଖାରବଦତ୍ୟ— ମହାମନ୍ତ୍ରୀ ! ମୋର ବିଳାସ ଭବନର ନିର୍ମାଣ କାର୍ଯ୍ୟ କେତେଦୂର ଗଲା !

ଚଣ୍ଡାଦତ୍ୟ— ସେଥିପାଇଁ ସ୍ଥାନ ନିର୍ବାଚନ ସରିଚି ମହିମା । ସୁହାଗିନୀ ନଦୀ ତଟବର୍ତ୍ତୀ ଏକ ପର୍ବତର ଉପରି ଭାଗରେ ନିର୍ମିତ ହେବ ଆମର ବିଳାସ କକ୍ଷ । ମାର୍ବଲ ପ୍ରସ୍ତର ନିର୍ମିତ ଏହି ବିଳାସ କକ୍ଷ ପାଇଁ ଆମର ସବୁ ଯୋଜନା ପ୍ରସ୍ତୁତ ସରିଚି ମହିମା । ଏଥିରେ ରହିବ ସବୁଠାରୁ ସୁରମ୍ୟ ପୁଷ୍ପବାଟିକା । ଆଉ କାଚ କେନ୍ଦୁ ପାଣିଥିବା ନିର୍ମଳ ପୁଷ୍କରଣୀ ।

ବୈରୋଚନ— ଆଉ ସେହି କାଚକେନ୍ଦୁ ପାଣିଥିବା ପୁଷ୍କରଣୀର ମାର୍ବଲ ପାବଚ୍ଛରେ କେଉଁ ଏକ ଜ୍ୟୋତ୍ସ୍ନାସ୍ନିତ ରଜନୀରେ ମହିମା ଆମର ବହୁ ଷୋଡ଼ଶୀଙ୍କର ଅଂଗ ସାନ୍ନିଧ୍ୟ......

ଖାରବଦତ୍ୟ—(ଗର୍ଜନ କରି) ସ୍ତବ୍ଧ ହୁଅ । (ବିଦୂଷକ ଅଟକି ଯାଇଛନ୍ତି ବକ୍ତବ୍ୟ ଶେଷ ନକରି ଓ ଅନ୍ୟମାନେ ଭୟଭୀତ ହୋଇ ଯାଇଛନ୍ତି ) ରାଜା ଖାରବଦତ୍ୟ କେବଳ କଳ୍ପନାରେ ବଂଚେ ନାହିଁ । କଳ୍ପନାକୁ କେମିତି ବାସ୍ତବାୟିତ କରିବାକୁ ହୁଏ ସେ ଜାଣେ । (କ୍ରୋଧରେ) କୁହ ମହାମନ୍ତ୍ରୀ ମୋର ବିଳାସ ଭବନ ନିର୍ମାଣରେ ଏତେ ବିଳମ୍ବ କାହିଁକି ?

ଚଣ୍ଡାଦତ୍ୟ – (ଭୀତତ୍ରସ୍ତ ହୋଇ) ମହିମା ! (ସେ ଯେମିତି କିଛି କହିବାକୁ ଚାହୁଁଥିଲେ କିନ୍ତୁ ଅଟକି ଗଲେ ।)

ଖାରବଦତ୍ୟ— ପୂର୍ବଠାରୁ ଆହୁରି କ୍ରୋଧାନ୍ୱିତ ହୋଇ) ଚଣ୍ଡାଦତ୍ୟ !

ଚଣ୍ଡାଦତ୍ୟ—ବିଳମ୍ବର କାରଣ ଅଭୟ ଦେଲେ ପ୍ରକାଶ କରିବି ମହିମା !

ଖାରବଦତ୍ୟ—ଅବିଳମ୍ବେ ପ୍ରକାଶ କର ଚଣ୍ଡାଦତ୍ୟ । ମୁଁ ଜାଣିବାକୁ ଚାହେଁ, ବିଳାସ ପ୍ରାସାଦର ନିର୍ମାଣ କ୍ଷେତ୍ରରେ ପ୍ରତିବନ୍ଧକ କିଏ ?

ଚଣ୍ଡାଦିତ୍ୟ—ସୁହାଗିନୀ ନଦୀତଟର ପାଟତ୍ୟ ଭୂମିରେ ବିଳାସ ଭବନ ପାଇଁ ସ୍ଥାନ ନିର୍ବାଚନ ପରେ ନଦୀ ତଟବର୍ତ୍ତୀ କୃଷକ ପଲ୍ଲୀର ଓ ଅନ୍ୟାନ୍ୟ ଆଖ ପାଖର ଜନ ବସତିରୁ ପ୍ରଜାମାନଙ୍କୁ ଅନ୍ୟତ୍ର ଗୃହନିର୍ମାଣ ପାଇଁ ଆମେ ନିର୍ଦ୍ଦେଶ ଦେଲୁ । ମାତ୍ର ତାହା ସେ ଅମାନ୍ୟ କରିବାରୁ ଆମେ ସୈନ୍ୟବଳ ଧରି ନିଶାର୍ଦ୍ଧରେ ସେହିସବୁ କୃଷକ ପଲ୍ଲୀ ଉପରେ ଆକ୍ରମଣ କରି ସେଗୁଡ଼ିକୁ ଧ୍ୱସ୍ତ ବିଧ୍ୱସ୍ତ କରିଦେଲୁ । ଏ କ୍ଷେତ୍ରରେ ଆମର ସେନାପତି ସୂର୍ଯ୍ୟସେନଙ୍କ ଉଦ୍ୟମ ପ୍ରଶଂସନୀୟ ।

ବୀରାଦିତ୍ୟ—ଉତ୍ତମ ! ତାପରେ ·· ··· ··· ··· ···

ସୂର୍ଯ୍ୟସେନ– ସୈନ୍ୟବାହିନୀ କିଛି କାଳ ସେଠି ଡ଼େରା ପକାଇ ରହିଲେ ବି ମଧ୍ୟେ ମଧ୍ୟେ କୃଷକମାନେ ସଂଗଠିତ ହୋଇ ସେମାନଙ୍କୁ ଆକ୍ରମଣ କଲେ । ମାତ୍ର ଆମର ବିଶାଳ ସେନାବାହିନୀ ସେମାନଙ୍କର ପ୍ରତି ଆକ୍ରମଣ କରି ବିଦ୍ରୋହର ସମ୍ପୂର୍ଣ୍ଣ ଅବସାନ ଘଟାଇଛନ୍ତି ମହାରାଜ ! ସେମାନଙ୍କର ବିଦ୍ରୋହୀ ନେତା ସାଧୁଚରଣ କେଉଁଠି ଆତ୍ମଗୋପନ କରିଛି ।

ବୈଲୋଚନ—ବଡ ଦୁଷ୍ଟ ପ୍ରଜାଗୁଡ଼ାଏ ମହାରାଜ ସେମାନଙ୍କୁ ସମସ୍ତଙ୍କୁ ଧରି ପୋକ ମାଛି ପରି ମାରନ୍ତୁ ମହାରାଜ !

୧ମ ପାରିଷଦ– ପ୍ରଜାଗଣ କ୍ରମଶଃ ଅବାଧ ହେବାକୁ ଲାଗିଲେଣି ମହାରାଜ ! ସେମାନେ ସଂଗଠିତ ହେବାକୁ ଚାହୁଁଛନ୍ତି, ବିଦ୍ରୋହର ଡ଼ାକରା ଦେଇ ରାଜାଙ୍କୁ ଅମାନ୍ୟ କରୁଛନ୍ତି ।

୨ୟ ପାରିଷଦ— ହୁମୁ ଚାହିଁଲେ ସେମାନେ କ୍ଷଣକେ ଭୂତଳଶାୟୀ ହେବେ ।

ଚଣ୍ଡାଦିତ୍ୟ—ବିଳାସ ପ୍ରାସାଦ ପାଇଁ ପ୍ରତ୍ୟେକ ପ୍ରଜାଙ୍କ ଉପରେ କର ବସିଛି । କର ଆଦାୟ ପାଇଁ ବଳପ୍ରୟୋଗ ବି ହୋଇଛି । ରାଜ୍ୟସାରା ସୈନ୍ୟବାହିନୀ ଖେଦି ଯାଇଛନ୍ତି । ତଥାପି ··· ··· ତଥାପି ରାଜକୋଷ ଶୂନ୍ୟ । ପ୍ରଜାମାନେ କହନ୍ତି: ସେମାନେ ଦୁର୍ଭିକ୍ଷ ପୀଡ଼ିତ, ତେଣୁ ସେମାନେ ଖଜଣା ଦେବାକୁ ଅସମର୍ଥ ।

ବୀରାଦିତ୍ୟ– (ଗର୍ଜ୍ଜନ କରି) ଅସମର୍ଥ ! ସେମାନଙ୍କୁ ସମର୍ଥ ହେବାକୁ ଶିଖାଅ ମନ୍ତ୍ରୀ ଚଣ୍ଡାଦିତ୍ୟ ! ଆଦେଶ ଅମାନ୍ୟ କରୁଥିବା ପ୍ରଜାଙ୍କୁ କଠୋର ଦଣ୍ଡଦିଅ । ଘୋଷଣା କରିଦିଅ ପ୍ରଜାସଙ୍ଗଠନର ନେତା ସାଧୁଚରଣଙ୍କୁ ଯିଏ ଧରିଦେବ ସେ ପାଇବ ଦଶହଜାର ସ୍ୱର୍ଣ୍ଣମୁଦ୍ରା ।

ଚଣ୍ଡାଦିତ୍ୟ—ଯଥା ଆଜ୍ଞା ମଣିମା !

ଖାରାଦିତ୍ୟ--ସେନାପତି ସୂର୍ଯ୍ୟସେନ, ତୁମେ ବି ବିଶାଳ ସୈନ୍ୟବାହିନୀ ନେଇ ଅବାଧ ପ୍ରଜାମାନଙ୍କର ମୁକାବିଲା ଲାଗି ପ୍ରସ୍ତୁତ ହୁଅ । ହତ୍ୟା ବିଭୀଷିକାର ତାଣ୍ଡବଲୀଳା ଛୁଟାଇ ଦେଇ ପ୍ରଜାମାନଙ୍କୁ ବାଧ୍ୟ କରାଅ, ବଶମ୍ବଦ କରାଅ । ହାଃ-ହାଃ-ହାଃ ··

ଚଣ୍ଡାଦିତ୍ୟ
ସୂର୍ଯ୍ୟସେନ }—ଆମେ ଏବେ ଆସୁଛୁ ମଣିମା । (ସେ ଦୁହେଁ ନିଷ୍କ୍ରାନ୍ତ ହୋଇଗଲେ ।)

ଖାରାଦିତ୍ୟ—(କ୍ଷୁବ୍ଧ ହୋଇ) ଆଶ୍ଚର୍ଯ୍ୟ ଏମାନେ ! ଏମାନେ କହନ୍ତି ରାଜ୍ୟସାରା ବିରାଜୁଛି ଶାନ୍ତି, ଅଥଚ ପ୍ରଜାଗଣ ଅଶାନ୍ତ ବିଦ୍ରୋହୀ ।

ବୈଲୋଚନ—ମହାରାଜ ! ମନ୍ତ୍ରୀ ଆଉ ସେନାପତି ଦୁହିଁଙ୍କର ଅନୁଗତ ଭିଳ । ଆପଣଙ୍କ ସୁଖ ଶାନ୍ତିରେ ବ୍ୟାଘାତ ଆଣିବା ପାଇଁ ଆମ୍ଭେମାନେ ଆପଣଙ୍କୁ ପ୍ରଜା ବିଦ୍ରୋହର ସେ ସୂଚନା ଦେଇ ନଥିଲୁ । ଆମେ ଚାହୁଁ ଆପଣ ଅଖଣ୍ଡ ଶାନ୍ତି ଓ ସନ୍ତୋଷରେ ରହନ୍ତୁ । ଦୁଃଖ ଯେମିତି ଆପଣଙ୍କୁ ସ୍ପର୍ଶ ନ କରେ ।

୧ମ ପାରିଷଦ—ବିଦୂଷକଙ୍କର ଉକ୍ତି ଯଥାର୍ଥ ମହାରାଜ । କେବଳ ସେଇଥିପାଇଁ ସେ ସମ୍ବାଦ ଆମ୍ଭେ ଆପଣଙ୍କ ଅଗୋଚରରେ ରଖିଥିଲୁ ।

୨ୟ ପାରିଷଦ—ଆମ୍ଭମାନଙ୍କର ମୁଣ୍ଡ ଆପଣଙ୍କ ପାଦତଳେ ବିକା ମହାରାଜ । ଆପଣଙ୍କ ସନ୍ତୋଷ ବିଧାନ ଆମର କର୍ତ୍ତବ୍ୟ । ସେଥିପାଇଁ ସେ ଘଟଣା ଆପଣଙ୍କୁ ନ ଜଣାଇ ମନ୍ତ୍ରୀ, ସେନାପତି ଏବଂ ଆମ୍ଭେ ପାରିଷଦଗଣ ତା'ର ସମାଧାନ ପାଇଁ ଯଥାସାଧ୍ୟ ଚେଷ୍ଟା କରିଥିଲୁ ।

ଖାରାଦିତ୍ୟ—ଆହୁରି କଠୋର ହେବାକୁ ପଡ଼ିବ । ଖାରାଦିତ୍ୟ କେବଳ ଶିଖିଛି ବଜ୍ରପରି ଦୃଢ଼ ହେବାକୁ । (ନିର୍ଦ୍ଦେଶ ଦେଇ) ହଁ ତୁମେ ଦୁହେଁ ବି ଯାଅ । ମନ୍ତ୍ରୀ ଓ ସେନାପତିଙ୍କୁ ତାଙ୍କ କାର୍ଯ୍ୟରେ ସହଯୋଗ କର ।

ପାରିଷଦଦ୍ୱୟ—ଯଥା ଆଜ୍ଞା ମହାରାଜ (ପ୍ରସ୍ଥାନ)

ଖାରାଦିତ୍ୟ - (କିଛି ସମୟ ପରେ) ବୈଲୋଚନ !

ବୈଲୋଚନ—ମଣିମା !

ବୀରାଦିତ୍ୟ— ହଠାତ୍ ସବୁ ଯେମିତ ଗୋଳମାଳ ହୋଇଗଲା ।

ବୈରୋଚନ—ହଁ, ବିଳାସ ଭବନର ନିର୍ମାଣ କାର୍ଯ୍ୟରେ ବିଳମ୍ବ, ଅବାଧ ପ୍ରଜାକୁଳ···

ବୀରାଦିତ୍ୟ— ମୁଁ ସୁଖରେ ରହିବାକୁ ଚାହେଁ ବୟସ୍ୟ । ଦୁର୍ଭିକ୍ଷର କବଳ ଗ୍ରାସରେ ରାଜ୍ୟ ଛାରଖାର ହୋଇଗଲେ ବି, ରାଜ୍ୟର ଆଭ୍ୟନ୍ତରୀଣ ଶାନ୍ତି ପ୍ରଜା ବିଦ୍ରୋହରେ ବିପର୍ଯ୍ୟସ୍ତ ହେଲେ ବି ମୋର ବିଳାସ ଦରକାର । ସୁଖ ଦରକାର ।

ବୈରୋଚନ – ନିଶ୍ଚୟ ନିଶ୍ଚୟ ମହାରାଜ, ଆପଣ ସୁଖ କରିବେନି ବିଳାସ କରିବେନି ତ ଆଉ କରିବ କିଏ । ଏ ରାଜ୍ୟର ସବୁ ସୁନ୍ଦର ପଦାର୍ଥ ତ ସବୁ ଆପଣଙ୍କ ପାଇଁ ·· ହେଃ ହେଃ · ହେଃ

ବୀରାଦିତ୍ୟ—ବୈରୋଚନ ! କବି ଶ୍ରୀକଣ୍ଠର କିଛି ଖବର ରଖିଛ ?

ବୈରୋଚନ— ସେ ତ ଆପଣଙ୍କ ଆଜ୍ଞାରେ ବନ୍ଦୀଶାଳାରେ ସଡୁଛି ।

ବୀରାଦିତ୍ୟ – ହାଃ - ହାଃ -- ହାଃ -- ସ୍ୱାଧୀନ ଚେତା କବି ଶ୍ରୀକଣ୍ଠ ।

ବୈରୋଚନ—କହୁଥିଲା କି ନା ସ୍ୱେଚ୍ଛାଚାରୀ ରାଜତନ୍ତ୍ରର ବିଲୋପ ପାଇଁ ସେ ଅଗ୍ନିବାଣ ସଂଗ୍ରାମ କରିବ ଓ କବିତା ଲେଖିବ ।

ବୀରାଦିତ୍ୟ— କଣ କହିଲ ସ୍ୱେଚ୍ଛାଚାରୀ ରାଜତନ୍ତ୍ର·· ହାଃ·· ହାଃ ହାଃ·· ଶ୍ରୀକଣ୍ଠ ବିଚରା ! ତାର ସୁନ୍ଦରୀ ପତ୍ନୀ ହିଁ ତାର ବିପର୍ଯ୍ୟୟର କାରଣ ।

ବୈରୋଚନ—ରାଜ୍ୟର ପ୍ରତ୍ୟେକ ସୁନ୍ଦର ବସ୍ତୁ ରାଜାଙ୍କର ଭୋଗ୍ୟ । ତା'ର ପତ୍ନୀ ମାଳବିକା ସେଥିରୁ ବାଦ୍ ପଡ଼ନ୍ତା କେମିତି ?

ବୀରାଦିତ୍ୟ – ଶ୍ରୀକଣ୍ଠଟା ବୋକା

ବୈରୋଚନ— ବୋକାନୁହେଁ ଅଜ୍ଞା ନିପଟ ବୋକ । ମାଳବିକା ସହ ଗୋଟିଏ ରାତି ଯାପନ ପାଇଁ ସେ ପାଇଥାନ୍ତା ହଜାର ହଜାର ସ୍ୱର୍ଣ୍ଣମୁଦ୍ରା, ମାତ୍ର ଏହାର ବିରୋଧକରି ସେ ପାଇଲା କାରାବାସ ।

ବୀରାଦିତ୍ୟ— ଆଉ ମାଳବିକା ?

ବୈରୋଚନ— ତା'ର ମନ ପରିବର୍ତ୍ତନ ପାଇଁ ଅନ୍ତଃପୁରରେ ବହୁ ସହଚରୀ ନିଯୁକ୍ତ ହୋଇଛନ୍ତି । ହେଲେ ମାଳବିକା କବି ଶ୍ରୀକଣ୍ଠକୁ ଦିନକୁ ଦିନ ଭକ୍ତ ହେଉଛି ।

ଝାସ୍ୱଦତ୍ତ୍ୟ—( ବ୍ୟଚଳିତ ହୋଇ ) ଓଃ  ମାଳବିକା···ମାଳବିକା·· ମୁଁ  ମାଳବିକାକୁ ଚାହେଁ ବୟସ୍ୟ । ଯେ କୌଣସି ମତେ । ସେ କୌଣସି ଉପାୟରେ ନଚେତ୍ ମୋର ରାଜା,  ରାଜପଣ ସବୁ ନିରର୍ଥକ ।

ବୈଲୋଚନ—ତୁମ୍ଭେ ଆପଣ ତ ତାକୁ ପ୍ରଥମ  ସାକ୍ଷାତରୁ  ଜମା ଭୁଲିପାରୁ ନାହାନ୍ତି ।

ଝାସ୍ୱଦତ୍ତ୍ୟ—ହଁ ବୟସ୍ୟ ! ସେ ଦିନ ଏକ ଗୋଧୂଳିର ନମ୍ର ସ୍ନିଗ୍ଧ ଆଲୋକରେ ମୁଁ ତାକୁ ଦେଖିଥିଲି । କ୍ଳାନ୍ତ  ଶ୍ରାନ୍ତ ହୋଇ  ମୃଗୟାରୁ  ଫେରୁଥାଏ ।  କାହାର ବୀଣାଜିଣା କଣ୍ଠ ମୋର  ଶ୍ରୁତି ଗୋଚର ହେଲା ।  ସୁହାଗିନୀ ନଦୀ ପାରବର୍ତ୍ତୀ ଏକ କୁଟୀରର ଦ୍ୱାର ଦେଶରେ ମାଳବିକା ଏକାକିନୀ ଗୀତ ଗାଉଥାଏ ।

[ ମଞ୍ଚର  ଆଲୋକ  ପରିବର୍ତ୍ତିତ ହେଲା  । ଏଠାରେ  ନୀଳାଭ ଆଲୋକର ସାହାଯ୍ୟ ନିଆଯାଇ  ପାରେ  । ଘୋଡ଼ା  ଖୁରାର  ଶବ୍ଦ  ଓ ତା  ପରେ  ମାଳବିକାର କଣ୍ଠ ସଙ୍ଗୀତ ଶୁଣାଗଲା ]

ଝର ଝର ଯାଏ ମଧୁ ଜୋଛନା, ଜୋଛନା
ପରାଣ ପ୍ରିୟ ମୋ ପାଶେ ଆସ ଆଜି
ଦୂରେଇ ଦୂରେଇ ରୁହନା···ରୁହନା ।
ଜୀବନେ ମରଣେ ଶୟନେ ସ୍ୱପନେ
ତୁମେ ମୋ କାମନା ବାସନା···ବାସନା
ଝର ଝର ଯାଏ ମଧୁ ଜୋଛନା··· ।
ମଳୟ ମଧୁରେ ଚଇତାଳି ବାଆ,
ଅଧୀର କି ଆଜି ହୁଏନା···ହୁଏନା
ଝର ଝର ଯାଏ ମଧୁ ଜୋଛନା···ଜୋଛନା ।
ପରାଣ ପ୍ରିୟ ମୋ ପାଶେ ଆସ ଆଜି
ଦୂରେଇ ଦୂରେଇ ରୁହନା · ରୁହନା ।

[ ଏଇ  ସ୍ୱପ୍ନିଳ  ଆମେଜଟି  କଟିଯାଇଥିଲା । ରାଜା  ଝାସ୍ୱଦତ୍ତ୍ୟ  ଯେମିତି ଏକ ସ୍ୱପ୍ନରେ ବୁଡ଼ି ଯାଇଥିଲେ ଏବଂ ବିଦୂଷକ ବୈଲୋଚନଙ୍କୁ କହି ଚାଲିଥିଲେ— ମଞ୍ଚରେ  ପୁଣି ଉଜ୍ଜ୍ୱଳ ଆଲୋକ । ]

ଝାସ୍ୱଦତ୍ତ୍ୟ—ମାଳବିକାର  ସେଇ  ସଙ୍ଗୀତ  ମୋର  ପ୍ରତିଟି  ତନ୍ତ୍ରୀରେ  ଯେପରି ମାଦକତା ଭରି ଦେଇଥିଲା  ବୈଲୋଚନ । ମୁଁ  ଆତ୍ମ ବିସ୍ମୃତ ହୋଇ ଯାଇଥିଲି ।

ସେଠାରୁ ଫେରିଲା ପରେ ମୋର ପ୍ରତିଟି ମୁହୂର୍ତ୍ତ ଯେମିତ ଯନ୍ତ୍ରଣା ଦାୟକ ମନେ ହେଲା, ଅସ୍ଥିର ମନେ ହେଲା । ସେନାପତି ସୂର୍ଯ୍ୟସେନ ଠିକ୍ ତା'ପର ଦିନ ମୋ ହାତେ ଶରେ କବି ଶ୍ରୀକଣ୍ଠଙ୍କୁ ମୋର ଅଭିପ୍ରାୟ ଜଣେଇଥିଲେ ।

[ ଦ୍ୱିତୀୟ କୋଣ୍‌ ଅନ୍ଧକାରରେ ବୁଡ଼ିଯାଇଛି ଏବଂ ପ୍ରଥମ କୋଣରେ ଅଲୋକ ଆସିଛି । ଠିଆ ହୋଇଛନ୍ତି କବି ଶ୍ରୀକଣ୍ଠ ଏବଂ ସେନାପତି ସୂର୍ଯ୍ୟସେନ ଓ ପାରିଷଦ୍ ଦ୍ୱୟ । ]

ସୂର୍ଯ୍ୟସେନ — ଏହା ମହାରାଜାଙ୍କର ନିର୍ଦ୍ଦେଶ ଶ୍ରୀକଣ୍ଠ । ଏହାର ଅବମାନନା କଲେ ତାର ପରିଣତି କପରି ଭୟାବହ ହେବ ସେକଥା ଥରେ କଳ୍ପନା କରି ଦେଖିଚ ?

ଶ୍ରୀକଣ୍ଠ — ରଖିଥା ତମର ସେ ମହାରାଜାଙ୍କ ନିର୍ଦ୍ଦେଶ । ତାଙ୍କ ରାଜ୍ୟରେ ମୁଁ ଘର କରିଚି ବୋଲି ତାଙ୍କ ପାଦତଳେ ମୁଣ୍ଡ ବିକି ଦେଇନି ।

୧ମ ପାରିଷଦ — ଏଁ ଏତେ ବଡ଼ ଆସ୍ପର୍ଦ୍ଧା !

ଶ୍ରୀକଣ୍ଠ — ଆସ୍ପର୍ଦ୍ଧା ନୁହେଁ ମହାଶୟ, ଏ ମୋର ଉଚିତ ଜବାବ୍ ।

୨ୟ ପାରିଷଦ — ( ତାକୁ ବୁଝାଇବାକୁ ଚେଷ୍ଟାକରି ) ଦେଖ ଶ୍ରୀକଣ୍ଠ ! ମହାରାଜ ୱୀରଦତ୍ତ୍ୟ ତମକୁ ଅସମ୍ମାନ କରୁନାହାନ୍ତି । ସେ ତମକୁ ରାଜକବି ପଦରେ ଅଧିଷ୍ଠିତ କରିବାକୁ ଚାହାନ୍ତି । ତମପାଇଁ ରାଜକୋଷରୁ ମାସିକ ବିପୁଳ ସ୍ୱର୍ଣ୍ଣମୁଦ୍ରାର ବ୍ୟବସ୍ଥା ମଧ୍ୟ ହୋଇଛି । ତମେ ସମ୍ମତ ହୁଅ ଶ୍ରୀକଣ୍ଠ ।

ଶ୍ରୀକଣ୍ଠ — ସାବଧାନ ନିର୍ଲଜ । ଆପଣଙ୍କପରି ରାଜାଙ୍କର ଚାଟୁକାର ମାନଙ୍କ ତୁଣ୍ଡରେ ହୁଏତ ଏକଥା ଶୋଭାପାଇପାରେ ମାତ୍ର ରାଜାଙ୍କର ସେ ଆଦେଶକୁ ମୁଁ ଶତ ପଦାଘାତକରେ ।

ସୂର୍ଯ୍ୟସେନ ଓ ପାରିଷଦ ଦ୍ୱୟ — ( ଏକ ସ୍ୱରରେ ) ଶ୍ରୀକଣ୍ଠ !

ଶ୍ରୀକଣ୍ଠ — ହଁ, ହଁ, ଯାଆନ୍ତୁ ଆପଣଙ୍କର ରାଜାଙ୍କୁ କହିବେ ମୁଁ ତାଙ୍କର ପ୍ରଜା ହୋଇପାରେ କିନ୍ତୁ ତାଙ୍କର ବଶମ୍ବଦ ନୁହେଁ କି ଚାଟୁକାର ନୁହେଁ ।

ସୂର୍ଯ୍ୟସେନ — ଉଦ୍ଧତ ଶ୍ରୀକଣ୍ଠ ! ରସନା ସଂଯତ କର ।

ଶ୍ରୀକଣ୍ଠ — ମୁଁ ଉଦ୍ଧତ ନୁହେଁ ହଜୁର । ଉଦ୍ଧତ ଆପଣମାନେ ଏବଂ ଆପଣଙ୍କର ସେହି ରାଜା ଯାହାଙ୍କର ଶାସନ କାଳରେ ପ୍ରଜାଗଣ ଦୁଃଖ ନୈରାଶ୍ୟରେ କାଳ

କାଟୁଛନ୍ତି । ଦୁଃଖର କଳାମେଘ ରାଜ୍ୟସାରା ଘୋଟି ରହିଛି । ରାଜ୍ୟରେ ଦୁର୍ଭିକ୍ଷର ଜ୍ୱାଳା ଆଉ ଏପଟେ ଅତ୍ୟାଚାରୀ ରାଜା ଓ ତାର ଚାଟୁକାର ଦଳ ବିଳାସ ବ୍ୟସନରେ ମଜ୍ଜି ରହି ସୁରା ସାକୀର ସେବା କରି ଚାଲିଛନ୍ତି ।

ସୂର୍ଯ୍ୟସେନ—( ଏସବୁକୁ ସେ ସହ୍ୟକରି ପାରୁ ନଥିଲେ ତେଣୁ କ୍ଷୁବ୍ଧ ହୋଇ ) ଓଃ, ବନ୍ଦକର ଶ୍ରୀକଣ୍ଠ, ଯଥେଷ୍ଟ ହୋଇଛି । ତମ ଔଦ୍ଧତ୍ୟର ପରିଣାମ ପାଇଁ ତମେ ଯେଉଁ ଶାସ୍ତି ପାଇବ ତାହା ଯେମିତି ଭୀଷଣ ସେମିତି ଭୟାବହ ।

୧ମ ପାରିଷଦ— ରାଜାଙ୍କର ଅବମାନନା, ପୁଣି ତାଙ୍କ ବିରୁଦ୍ଧରେ କୁତ୍ସା ଏହା ଶୁଣିବା ଆଗରୁ ମୋର ମୃତ୍ୟୁ ନହେଲା କାହିଁକି ?

୨ୟ ପାରିଷଦ—ମହାମହିମ ସମ୍ରାଟ ହାରାଦତ୍ୟଙ୍କପରି ଶକ୍ତିଧର କୀର୍ତ୍ତିଶାଳୀ ଦେବଗୁଣ ସଂପନ୍ନ ବ୍ୟକ୍ତିଙ୍କ ବିରୁଦ୍ଧରେ ଏକ ନଗଣ୍ୟ କବି ଶ୍ରୀ କଣ୍ଠର ଏ କୁତ୍ସା । ଅସହ୍ୟ, ଅସହ୍ୟ, ଏହାଠାରୁ ଘୋର ଦୁଃଖ କଣ ଥାଇ ପାରେ ? (ସୂର୍ଯ୍ୟସେନଙ୍କୁ) ସେନାପତି ! ଶୀଘ୍ର ଏହାର ପ୍ରତିକାର କରନ୍ତୁ ।

୧ମ ପାରିଷଦ—ଜଣାପଡ଼ୁଛି ଶ୍ରୀକଣ୍ଠ ବୋଧହୁଏ ସାଧୁ ଚରିତ୍ରର ଲୋକ ।

ସୂର୍ଯ୍ୟସେନ—କଣ ଶ୍ରୀକଣ୍ଠ ! ରାଜାଜ୍ଞା ପାଳନ କରି ତୁମେ ତୁମର ପତ୍ନୀ ମାଳବିକାକୁ ରାଜ ଅନ୍ତଃପୁରକୁ ପ୍ରେରଣ କରିବ କି ନାଁ ?

ଶ୍ରୀକଣ୍ଠ—( ଦୃଢ଼କଣ୍ଠରେ ) ନାଁ । ସେନାପତି, ମୁଁ ଦରିଦ୍ର ଦୀନକବି ହୋଇପାରେ ମାତ୍ର ମୋର ଆତ୍ମ ସମ୍ମାନ ଅଛି । ଗୋଟାଏ ଅତ୍ୟାଚାରୀ କାମୁକ ରାଜାର ଲାଳସା ଚରିତାର୍ଥ କରିବାପାଇଁ ମୁଁ ମୋର ପତ୍ନୀକୁ ପ୍ରେରଣ କରିବି । ଅସମ୍ଭବ । ସୂର୍ଯ୍ୟ ପଶ୍ଚିମ ଦିଗରେ ଉଦୟ ହୋଇ ପାରନ୍ତି ମାତ୍ର ମୁଁ ଏ ରାଜାଜ୍ଞା ପାଳନ ପାଇଁ ଅସମର୍ଥ ।

ସୂର୍ଯ୍ୟସେନ—( ଚାବୁକରେ ଆଘାତ କରି ) ଅସମର୍ଥ ! ହାଃ···ହା···ହାଃ

୧ମ ପାରିଷଦ— ଉଚିତ··· ଉଚିତ ଶାସ୍ତି ।

୨ୟ ପାରିଷଦ—ଆହୁରି ପ୍ରହାର କରନ୍ତୁ ସେନାପତି, ଅବାଧ୍ୟ ଶ୍ରୀକଣ୍ଠ ଖୋଲୁ ରାଜ ନିପୀଡ଼ନ ।

ସୂର୍ଯ୍ୟସେନ—ଆରେ କେ ଅଛରେ······

( ଦୁଇଜଣ ରକ୍ଷୀ ପ୍ରବେଶ କରିଛନ୍ତି )

ଜଣେରକ୍ଷୀ --ଆଦେଶ କରନ୍ତୁ ସେନାପତି !

ସୂର୍ଯ୍ୟସେନ –ଶ୍ରୀକଣ୍ଠ ହାତରେ ଶୃଙ୍ଖଳ ଦେଇଦିଅ ଆଉ କଠୋର ନିରାପତ୍ତା ମଧ୍ୟରେ ନେଇ ଯାଅ ତାକୁ ରାଜ ବାଟୀକୁ ।

[ଶ୍ରୀ କଣ୍ଠକୁ ରକ୍ଷୀଦ୍ୱୟ ଶ୍ରୃଙ୍ଖଳ ପିନ୍ଧାଇ ଦେଉଥିଲା ବେଳେ ବ୍ୟସ୍ତ ଓ ବିଚଳିତ ଭାବରେ ପ୍ରବେଶ କରିଛି ମାଳବିକା ଓ ତାକୁ ଏପରି ଅବସ୍ଥାରେ ଦେଖି ଧାଇଁ ଯାଇଛି ତା ନିକଟକୁ । ]

ମାଳବିକା— ଆପଣମାନେ କୁଆଡ଼େ ତାଙ୍କୁ ନେଇଯାଉଛନ୍ତି ? କହନ୍ତୁ କଣ ତାଙ୍କର ଅପରାଧ ?

(ରକ୍ଷୀ ଶୃଙ୍ଖଳ ପିନ୍ଧେଇ ସାରିଥିଲେ । ସୂର୍ଯ୍ୟସେନ ଓ ପାରିଷଦ ଦ୍ୱୟ ବଡ଼ ନିର୍ଲଜ ଭାବରେ ଅବଲୋକନ କରୁଥିଲେ ମାଳବିକାର ରୂପଶ୍ରୀକୁ ।)

ସୂର୍ଯ୍ୟସେନ – ହାଃ····· ହାଃ ·····ହାଃ ଏଇ ତାହେଲେ ମାଳବିକା

୧ମ ପାରିଷଦ--(୨ୟ ପାରିଷଦକୁ ରସିକତା କରି) ମୋର କଣ ଇଚ୍ଛା ହେଉଛି ଜାଣିଛ ଏଇ ମୁହୂର୍ତ୍ତରେ କବିଟିଏ ହୋଇ ମାଳବିକାର ରୂପ ଗୁଣ ବର୍ଣ୍ଣନା କରି ବସନ୍ତି ।

୨ୟ ପାରିଷଦ—ଇଏ କୁଟୀରରେ ରହିବା ପୁଣି ଜଣେ ଦରିଦ୍ର କବିର ଗୃହିଣୀ ହେବା ଜମା ସୁନ୍ଦର ଦିଶୁନି ମହାଶୟ ।

ଶ୍ରୀକଣ୍ଠ – ଚୁପ୍ କର କୁକୁର ଦଳ । ଶାଳୀନତାର ସୀମା ସବୁ ଲଙ୍ଘି ଯାଉଚ !

ସୂର୍ଯ୍ୟସେନ – ହାଃ······ହାଃ (ଚାବୁକରେ ଆଘାତ କରି) କବି ଶ୍ରୀକଣ୍ଠ ! ଏଇମାତ୍ର ତୁମ ଭାଗ୍ୟ ବିପର୍ଯ୍ୟୟର ଆରମ୍ଭ (ରକ୍ଷୀ ଦ୍ୱୟଙ୍କୁ) ହୁଁ, ନେଇ ଚାଲ ଏମାନଙ୍କୁ ରାଜବାଟୀକୁ ।

ମାଳବିକା—ନାଁ କହନ୍ତୁ କଣ ଆମର ଅପରାଧ ? କାହିଁକି ତାଙ୍କ ହାତରେ ବେଡ଼ି ଦେଇ ଆପଣମାନେ ତାଙ୍କୁ ରାଜବାଟୀକୁ ନେଇ ଯାଉଛନ୍ତି ।

ସୂର୍ଯ୍ୟସେନ – ଅପରାଧ : ହାଃ···ହାଃ । ଖୁବ୍ ଜଘନ୍ୟ ଅପରାଧ ।

୯ମ ପାରିଷଦ—ତୁମର ଅନିନ୍ଦ୍ୟ ରୂପହିଁ ତାଙ୍କର ଅପରାଧ ।

୧ମ ପାରିଷଦ — ଏବଂ ସମ୍ରାଟ ବୀରଦତ୍ତ ଚାହାଁନ୍ତି ତୁମେ ରାଜ ଅନ୍ତଃପୁର ମଣ୍ଡନ କରିବ । ଆଉ ସେଥିପାଇଁ ତୁମକୁ ପୁରସ୍କାର ବି ଦିଆଯିବ । କବି ଶ୍ରୀକଣ୍ଠ ରାଜ କବିର ସମ୍ମାନ ପାଇବେ । ଆଉ ପାଇବେ ମାସିକ ପ୍ରଚୁର ସ୍ୱର୍ଣ୍ଣମୁଦ୍ରା ।

ସୂର୍ଯ୍ୟସେନ – ତେବେ ଶୁଣ ମାଳବିକା ତୁମେ ସ୍ୱଇଚ୍ଛାରେ ଯିବ ନା ଆମେ ତୁମକୁ ବଳ ପ୍ରୟୋଗ କରି ନେଇଯିବୁ ।

ଶ୍ରୀକଣ୍ଠ – ନାଁ । ମାଳବିକା -- ନାଁ ଏହା ହୋଇ ପାରେନା ।

ମାଳବିକା—ଆମେ କାହାର ବା କଣ ଅନିଷ୍ଟ କରିଥିଲୁ ? ସୁହାଗିନୀ ନଦୀ ତଟର ଏଇ କ୍ଷୁଦ୍ର କୁଟୀର ହିଁ ଆମର ଏକ ମାତ୍ର ସମ୍ବଳ । ସେ କବିତା ଲେଖନ୍ତି । ମୁଁ ସେଥିରେ ସୁର ଦିଏ । ତାକୁ ବୋଲି ଯାହା କିଛି ମିଳେ ଆମେ ଚଳିଯାଉ । ଆମେ ଧନୀ ନୋହୁ, ନାହିଁ ମଧ୍ୟ ଆମର ଆଭିଜାତ୍ୟ । କେବେତ ଆମେ ରାଜାଙ୍କର ଅନୁଗ୍ରହ ବି ଚାହିଁନୁ ।

୧ମ ପାରିଷଦ— ତୁମେ ରାଜ ଅନୁଗ୍ରହ ନ ଚାହିଁଲେ ବି ସୁନ୍ଦରୀ ତୁମେ ରାଜ ଅନୁଗ୍ରହ ପ୍ରତ୍ୟାଖ୍ୟାନ କରିଛ । ତମର ସ୍ମରଣ ଥାଇ ପାରେ କିଛିଦିନ ତଳେ ରାଜାଙ୍କର ନିର୍ଦ୍ଦେଶ ଧରି ମୁଁ ତମର ଦ୍ୱାରସ୍ଥ ହୋଇଥିଲି । ରାଜାଙ୍କର ଆଦେଶ ଥିଲା । ଶ୍ରୀକଣ୍ଠ ରାଜ ପ୍ରଶସ୍ତି ଲେଖନ୍ତୁ । କବିତା ଲେଖନ୍ତୁ ଯେଉଁଥିରେ କେବଳ ରାଜ ବନ୍ଦନାହିଁ ରହିବ । ମାତ୍ର ତାହା ସେ ପ୍ରତ୍ୟାଖ୍ୟାନ କରିଥିଲା । ଆଜି ଆଉ ଏକ ଅନୁଗ୍ରହ ପ୍ରତ୍ୟାଖ୍ୟାନ କରି ସେ ଘୋର ପାପଭାଗୀ ହୋଇ ପଡ଼ିଛି ।

ସୂର୍ଯ୍ୟସେନ — ଆଉ ଅଯଥା ବିଶ୍ଳେଷଣର ଆବଶ୍ୟକତା ନାହିଁ । ଶ୍ରୀକଣ୍ଠ ପ୍ରଜା ବିଦ୍ରୋହର ନେତା ସାଧୁ ଚରଣର ଅନୁଗତ । ବିଦ୍ରୋହୀ ପ୍ରଜାଗଣ ତାର ବିପ୍ଳବୀ କବିତାରେ ଉଦବୁଦ୍ଧ ହୋଇ ରାଜାଙ୍କ ଅବମାନନା କରି ଚାଲିଛନ୍ତି ଆଉ ଏବେ ରାଜା ବୀରଦତ୍ତଙ୍କ ବିରୁଦ୍ଧରେ କୁତ୍ସା ନିନ୍ଦା ଓ ଅପମାନ ସୂଚକ ବାକ୍ୟ କହିଥିବାରୁ ସେ ଗୁରୁତର ଅପରାଧରେ ଅଭିଯୁକ୍ତ । ତାର ଉଚିତ ବିଚାର ଦରବାରରେ ହେବ । (ରକ୍ଷୀଙ୍କୁ) ହଁ ନେଇ ଆସ ତାକୁ ଆଉ ମାଳବିକା ହାତରେ ଶୃଙ୍ଖଳ ଦେଇ ତାକୁ ବି ନେଇ ଆସ ।

ଶ୍ରୀକଣ୍ଠ — (ଛୁଟି ପିଟି ହୋଇ) ମୋ ଦେହରେ ବିନ୍ଦୁଏ ରକ୍ତ ଥିବା ପର୍ଯ୍ୟନ୍ତ ମୁଁ ଏହାର ପ୍ରତିରୋଧ କରିବି ସେନାପତି ।

ମାଲବିକା – (କାନ୍ଦି) ନାଁ, ଥାଉ, ମୋ ହାତରେ ଶୃଙ୍ଖଳର ଆବଶ୍ୟକତା ନାହିଁ । ମୁଁ ମୋ ସ୍ୱାମୀଙ୍କ ସହିତ ରାଜଦରବାରକୁ ଯିବି ।

ଶ୍ରୀକଣ୍ଠ—ନାଁ । ମାଲବିକା । ତମେ ମନାକର ।

ମାଲବିକା—(ଛଳ ଛଳ ଆଖିରେ) କବି ଶ୍ରୀକଣ୍ଠଙ୍କ ବିନା ମୋର ଅସ୍ତିତ୍ୱ ମୁଁ କେମିତି କଳ୍ପନା କରି ପାରିବି ।

ଶ୍ରୀକଣ୍ଠ—ମାଲବିକା (ଆଖିରେ ଲୁହ)

ମାଲବିକା--ତୁମକୁ ଯେଉଁ ରାଜଦଣ୍ଡ ମିଳିବ ମୁଁ ବି ତାକୁ ବରିନେବି କବି ! ହୁଏତ ସେଇ ଶାସ୍ତି ଭିତରେ ମୁଁ ସାନ୍ତ୍ୱନା ପାଇବି ।

ଶ୍ରୀକଣ୍ଠ—ତମେ ଜାଣନା ମାଲବିକା, ଏମାନେ ପଶୁ । ଏମାନେ ରକ୍ଷକ ହୋଇ ଭକ୍ଷକ । ଏମାନଙ୍କ ପ୍ରଭୁ ରାଜାବୀରାଦିତ୍ୟ .... ସେ ତମର ..... (ଆଖିରୁ ଅବାରିତ ଅଶ୍ରୁ ଗଡ଼ିବା ସଙ୍ଗେ ସଙ୍ଗେ ତାଙ୍କର କଣ୍ଠ ରୁଦ୍ଧ ହୋଇ ଆସିଲା । ଶୃଙ୍ଖଳ ପିନ୍ଧା ଦୁଇ ହାତରେ ସେ ମୁହଁ ଢ଼ାଙ୍କିଦେଲେ ।)

ମାଲବିକା—କବି (ସେ କାନ୍ଦୁଥିଲା ଖୁବ୍ ଜୋରରେ)

ସୂର୍ଯ୍ୟସେନ—ନେଇଯାଅ ସେମାନଙ୍କୁ । (ପାରିଷଦ ଦ୍ୱୟଙ୍କୁ) ଆସନ୍ତୁ ଆପଣମାନେ ଅଯଥା ବିଳମ୍ବ ଘଟୁଛି ।

[ସୂର୍ଯ୍ୟସେନ ଓ ପାରିଷଦ ମାନେ ଚାଲିଗଲେ । ରକ୍ଷୀ ଦୁହେଁ ମାଲବିକା ଓ ଶ୍ରୀକଣ୍ଠକୁ ନେଇ ଯାଉଥିଲା ବେଳେ ପ୍ରଥମ କୋନ୍ ଅନ୍ଧକାରରେ ବୁଡ଼ିଗଲା । ଆଲୋକ ଆସିଲା ଦ୍ୱିତୀୟ କୋନ୍‌ରେ । ବୈଲୋଚନ ରାଜା ବୀରାଦିତ୍ୟଙ୍କୁ କହୁଥିଲେ—]

ବୈଲୋଚନ—କବି ଶ୍ରୀକଣ୍ଠ ଏବେ କାରାଗାରର ନିରନ୍ଧ୍ର ଅନ୍ଧକାର ମଧ୍ୟରେ ରହି କବିତା ଲେଖୁଥାଉ ।

ବୀରାଦିତ୍ୟ—ମୁଁ ସେଥିପାଇଁ ଚିନ୍ତିତ ନୁହେଁ ବୟସ୍ୟ, ମୁଁ ଚିନ୍ତିତ ମାଲବିକା ପାଇଁ । ବାରମ୍ବାର ସେ ମୋତେ ପ୍ରତ୍ୟାଖ୍ୟାନ କରି ଚାଲିଛି । ଭାବିଛି ନିଷ୍ଠୁର ହେବି, କ୍ରୁର ହେବି ଆଉ ତାକୁ ଶାସ୍ତି ଦେବି । ମାତ୍ର କେଜାଣି କାହିଁକି...ମୁଁ ମୁଁ ପାରିନି ବୟସ୍ୟ । ତା ରୂପ ସୌନ୍ଦର୍ଯ୍ୟ ନିକଟରେ ମୁଁ ଦୁର୍ବଳ ହୋଇ ପଡ଼ୁଛି । ଆହୁରି ବି ମତେ ଦୁର୍ବଳ କରିଦେଇଚି ପାଟ ମହାରାଣୀଙ୍କ ସ୍ୱପ୍ନ ବୃତ୍ତାନ୍ତ ।

ବୈଲୋଚନ—ସ୍ୱପ୍ନ ବୃତ୍ତାନ୍ତ ?

ଯାଗଦତ୍ୟ—ହଁ ବୟସ୍ୟ । ଜଣେ କୁଳବଧୂ କୁଆଡ଼େ ମୋର ମୃତ୍ୟୁର କାରଣ ହେବ । ସେଥିପାଇଁ ମହାରାଣୀ ଖୁବ୍‌ଚିନ୍ତିତ ଆଉ ମତେ ସେ ବାରମ୍ବାର ଅନୁରୋଧ କରୁଛନ୍ତି କବି ଶ୍ରୀକଣ୍ଠ ଓ ତାର ପତ୍ନୀକୁ ମୁକ୍ତ କରିଦେବା ପାଇଁ ।

ବୈଲୋଚନ—ହୋଃ…ହୋଃ · ସ୍ୱପ୍ନ ସବୁବେଳେ ସ୍ୱପ୍ନ ମହାରାଜ । ତାହା କେବେ କଣ ବାସ୍ତବ ହୁଏ । ଏହା ମହାରାଣୀଙ୍କ ଅହେତୁକ ଆଶଙ୍କା ।

ଯାଗଦତ୍ୟ – ଆଶଙ୍କା ନୁହେଁ ବୟସ୍ୟ, ଈର୍ଷା । ମୁଁ କାଦମ୍ବିନୀର କଥାକୁ ଭ୍ରୂକ୍ଷେପ କରେନା । ମୁଁ ମାଳବିକାକୁ ଚାହେଁ ବୟସ୍ୟ—ମୁଁ ତାକୁ ଏକାନ୍ତ ଭାବରେ ଚାହେଁ କିନ୍ତୁ—

ବୈଲୋଚନ—ସେ ଶୁଭ ମୁହୂର୍ତ୍ତ ଆଉ ବେଶି ଡେରି ନାହିଁ ମହାରାଜ ।

ଯାଗଦତ୍ୟ – ହଁ ତୁମେ ଅନ୍ତଃ ପୁରରେ ପ୍ରବେଶ କରି ଦେଖ ମାଳବିକାର ମନ ପରିବର୍ତ୍ତନ ହେଲାଣି କି ନାଁ । ଦରକାର ପଡ଼ିଲେ ଆଉ ସହଚରୀମାନଙ୍କୁ ନିଯୁକ୍ତ କର । ଭୟ, ପ୍ରଲୋଭନ ପ୍ରଦର୍ଶନ କରି ମୋର ଅଙ୍କ ଶାୟିନୀ ହେବାପାଇଁ ତାକୁ ପ୍ରବର୍ତ୍ତାଅ ।

ବୈଲୋଚନ— ସେଥିରେ ଆଉ କଣ ହେଲା ହବ ମହାରାଜ । ହଉ ମୁଁ ଆସୁଛି ।

(ସେ ଚାଲିଗଲେ । ମଞ୍ଚକୁ ଆସିଲେ ମହାରାଣୀ କାଦମ୍ବିନୀ ସେ ଯେମିତ ଖୁବ୍ ବ୍ୟଥିତ ଏବଂ ଚିନ୍ତିତ ମନେ ହେଉଥିଲେ ।)

ଯାଗଦତ୍ୟ— ଆସ ରାଣୀ ! ଅନ୍ତଃପୁର ତ୍ୟାଗ କରି ଏ ଅସମୟରେ—।

ମହାରାଣୀ—ଭାବିଥିଲି ତୁମର ଏ ଦରବାରରେ, ମନ୍ତ୍ରୀ, ସେନାପତି, ପ୍ରମୁଖଙ୍କ ଉପସ୍ଥିତିରେ ମୋ ମନକଥା ପ୍ରକାଶ କରିଦେବି । ଖୁବ ବ୍ୟସ୍ତ ଲାଗୁଛ ମହାରାଜ- ଏଇ କେତେଦିନ ହେବ ମୁଁ କିମିତି ଏକ ଜ୍ୱାଳା ଯନ୍ତ୍ରଣାରେ ଛଟ ପଟ ହେଉଛି ।

ଯାଗଦତ୍ୟ – କର୍ଣ୍ଣପୁର ରାଜ୍ୟର ମହାରାଣୀ କାଦମ୍ବିନୀଙ୍କର ପୁଣି ଜ୍ୱାଳା, ଯନ୍ତ୍ରଣା, ବ୍ୟସ୍ତତା…… ହାଃ…ହାଃ… ହାଃ ହସାଇଲ ମତେ ରାଣୀ ।

ମହାରାଣୀ— ରାଜ୍ୟ ସାରା ଦୁର୍ଭିକ୍ଷର କରାଳ ଲୀଳା । ପ୍ରଜାମାନେ ପୋକ ମାଛି ପରି ମରୁଛନ୍ତି । ଯେଉଁ ଆଡ଼କୁ ଚାହିଁବ ଖାଲି କଙ୍କାଳର ଶୋଭାଯାତ୍ରା, ଶ୍ୱାନ ଶୃଗାଳଙ୍କର ବିକଟ ଶବ୍ଦ । ଏ ଅବସ୍ଥାରେ ପ୍ରଜାଙ୍କ ଉପରେ କର ଭାର, ଆଉ

ବିଳାସ ଭବନ ନିର୍ମାଣ; କବି ଶ୍ରୀକଣ୍ଠ ଆଉ ତା ପତ୍ନୀ ମାଳବିକା ଉପରେ ନିର୍ଯ୍ୟାତନା । ଏସବୁ ମତେ ଜମା ଭଲ ଲାଗୁନି ମହାରାଜ । ଲାଗୁଛି ଯେମିତି କିଛି—

ବୀରାଦିତ୍ୟ - କଣ ମହାରାଣୀ ?

ମହାରାଣୀ – କିଛି ଗୋଟେ ଓଲଟ ପାଲଟ, ପରିବର୍ତ୍ତନର ପୂର୍ବାଭାସ ।

ବୀରାଦିତ୍ୟ—(ଉଚ୍ଚ ସ୍ୱରରେ) ନାଁ ରାଣୀ, ଏହା ଅସମ୍ଭବ । ଗୋଟେ ଅହେତୁକ କଳ୍ପନା ତମକୁ ଗ୍ରାସ କରିଛି ।

ମହାରାଣୀ—(ଅନୁନୟ କଣ୍ଠରେ) ନା ମହାରାଜ ! ମୋର ତମକୁ ଅନୁରୋଧ ଶ୍ରୀକଣ୍ଠକୁ ଛାଡ଼ିଦିଅ । ମାଳବିକାକୁ ମୁକ୍ତିଦିଅ ।

ବୀରାଦିତ୍ୟ— ହାଃ···ହାଃ···ମୁକ୍ତି ଦେବି ? ମାଳବିକାକୁ ମୁକ୍ତି ଦେବି ? ତମର କଣ ଈର୍ଷ୍ୟା ହେଉଛି କାଦମ୍ବିନୀ ?

ମହାରାଣୀ— ଈର୍ଷ୍ୟା ନୁହେଁ ମହାରାଜ ଗୋଟାଏ ନାରୀ ପାଇଁ ଆଉ ଗୋଟାଏ ନାରୀର ଆକୁଳ ପ୍ରାର୍ଥନା । ଅନେକ ଝଞ୍ଜାଟର ମୁଁ ତମର ସନ୍ଧିଛି । ଆଜି କିନ୍ତୁ···? କେଜାଣେ ସେ ସ୍ୱପ୍ନ ବୃତ୍ତାନ୍ତ ହୁଏତ···

ବୀରାଦିତ୍ୟ—ତମର ସେ ସ୍ୱପ୍ନ ବୃତ୍ତାନ୍ତକୁ ମୁଁ ଖାତିର କରେନା ରାଣୀ ମୋର ଦୃଢ଼ ଶକ୍ତି ନେଇ ମୁଁ ଯେ କୌଣସି ଦୁର୍ଭାଗ୍ୟ ଦୁର୍ଦ୍ଦଶାର ସମ୍ମୁଖୀନ ହେବାପାଇଁ ପ୍ରସ୍ତୁତ ।

ମହାରାଣୀ—ଜାଣିଥିଲି ମହାରାଜ ମୋ ପ୍ରାର୍ଥନା ନିଷ୍ଫଳ ହେବ । ······ଲକ୍ଷ୍ୟ କରିଛ ତମ ରାଜ୍ୟର ଏ ବନ୍ଧ୍ୟା ମାଟିକୁ । ବିଗତ କେତେ ବର୍ଷ ଧରି ଯେଉଁ ମାଟିରେ କୁଟା ବି କଅଁଳିନି । ଖାଦ୍ୟ ଓ ପାନୀୟ ଅଭାବରେ ଶତ ଶତ ନର ନାରୀଙ୍କର ଆକୁଳ କ୍ରନ୍ଦନ ଗଗନ ପବନ ମୁଖରିତ କରିଛି । ଆଉ ଲକ୍ଷ୍ୟ କରିଛ ତମର ପାଟ ମହାରାଣୀ କାଦମ୍ବିନୀକୁ ! କେଉଁ ଅଭିଶାପରେ କେଜାଣି ସେ ବି ବନ୍ଧ୍ୟା । ତଥାପି ତୁମର ଚୈତନ୍ୟ ଉଦୟ ହୋଇନି ରାଜା ?

ବୀରାଦିତ୍ୟ —(କ୍ରୋଧରେ) ଚୈତନ୍ୟ ଉଦୟ । ହାଃ ହାଃ···ହାଃ ··ତୁମର ମତିଭ୍ରମ ହୋଇଛି ରାଣୀ । ତୁମେ ବିଶ୍ରାମ କର । ମୋର କର୍ତ୍ତବ୍ୟ ସଂପର୍କରେ ମତେ ଏକୁଟିଆ ଭାବିବାକୁ ଦିଅ । ହଁ ତୁମେ ଯାଅ ।

ମହାରାଣୀ—(ଚକ୍ଷୁରେ ଲୋତକ) ବେଶ, ମୋର ପରାମର୍ଶ ଯଦି ତୁମର ଗ୍ରହଣ ଯୋଗ୍ୟ ନହେଲା ମୁଁ ନାଗ୍ୟର ମହାରାଜ ! କିନ୍ତୁ ଏ ସବୁର ଯେଉଁ ଭୀଷଣ ପରିଣତି ତାର ସମ୍ମୁଖୀନ ହେବ ତୁମେ—ସେଦିନ ଆଉ ବେଶି ଡେରି ନାହିଁ । (ପ୍ରସ୍ଥାନ)

ବୀରଦତ୍ତ୍ୟ—ହାଃ ହାଃ ହାଃ···ମହାରାଣୀଙ୍କର ମାନସିକ ବିକୃତି ଘଟିଛି ।

(ଭାସି ଆସୁଥିଲା ସମ୍ମିଳିତ କଣ୍ଠ ସଙ୍ଗୀତ)

ଚାଲରେ······

ଚାଲରେ ଦଳିତ ପୀଡ଼ିତ ଜାତି
ସର୍ବହରା ଉଠରେ ମାତି
ଶୋଷଣ ପେଷଣ ଚୂର୍ଣ୍ଣ କର
ଅନ୍ୟାୟ କାରା ଭାଙ୍ଗି ଦିଅ
ଜାଗରେ ନବୀନ ଯୁଗର ସାଥି ।
ଚାଲରେ ଦଳିତ ପୀଡ଼ିତ ଜାତି···
ନୂତନ ରବି ଆସେରେ ଉଇଁ
ନବୀନ ଗୀତ ପରାଣ ଛୁଇଁ
ଆଗେଇ ଚାଲ, ଆଗେଇ ଚାଲ
ଚାଲରେ ମରଣ ପଥର ଯାତ୍ରୀ
ପାହିବ ଅନ୍ଧାର ରାତ୍ରୀ ।

ଚାଲରେ······ ।

[ଖୁବ ବ୍ୟସ୍ତ ଓ ବିଚଳିତ ହୋଇପଡ଼ି ରାଜା ବୀରଦତ୍ତ୍ୟ ମଞ୍ଚର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଯାଏ ଧାଇଁ ଚାଲିଥିଲେ । ସେ ଜାଣିବାକୁ ଚାହୁଁଥିଲେ ପ୍ରକୃତରେ ସେ ସଙ୍ଗୀତର ଲହର କେଉଁଠୁ ଆସୁଛି । ପରେ ସେ ଆସି ବସି ପଡ଼ିଲେ ସିଂହାସନରେ ।]

ବୀରଦତ୍ତ୍ୟ—ଓଃ·· [ସେ ଯେମିତି ଖୁବ୍ କ୍ଳାନ୍ତ ହୋଇ ପଡିଥିଲେ । ଦ୍ୱିତୀୟ କୋଣର ଆଲୋକ ଖୁବ୍ ମଳିନ ପଡ଼ିଗଲା । ଯେପରିକି ସେଠାରେ କେବଳ ରାଜା ବୀରଦତ୍ତ୍ୟଙ୍କ ଉପସ୍ଥିତି ବାରିହୋଇ ପାରୁଥିବ । ସେ ସେଇଠି ଯେମିତି ନିଶ୍ଚଳ ହୋଇଗଲେ ଚିନ୍ତିତ ଅବସ୍ଥାରେ । ପ୍ରଥମ କୋଣ ଆଲୋକିତ ହେଲା ଲାଲ ରଙ୍ଗର

ଆଲୋକରେ । ସେଠି ଠିଆ ହୋଇଥିଲା ପୂର୍ବର ସେଇ ଦୀନ ହୀନ ଭଗ୍ନ ସ୍ୱାସ୍ଥ୍ୟ ମଣିଷଟିଏ । ତା ବେଶ ପୋଷାକ ସେମିତି ଆଗଭଳି । ତା ପୁଡିଆ ଭିତରୁ ସେ ବାହାର କରୁଛି ଡିଆସିଲିଟାଏ । ଚକ୍ଷୁ ତାର ବିସ୍ଫାରିତ ହୋଇଯାଇଛି । ପୁଣି ସେ କେତେଗୁଡ଼ିଏ କନା ବାହାର କରି ଗୋଟେ କାଠିରେ ଗୁଡ଼େଇ ମଶାଲଟିଏ ତିଆରି କରୁଛି । ସେଥିରେ ଅଗ୍ନି ସଂଯୋଗ କରି ସେ ତାକୁ ଦୃଢ଼ ଭାବରେ ଧରି ଠିଆ ହୋଇଛି । ତା' ଆଖିରୁ ଯେମିତି ନିଆଁ ବାହାରୁଛି । ଶୁଣାଯାଉଛି ପୂର୍ବର ସେଇ ଗୀତ 'ଦଳିତ ପୀଡ଼ିତ ଜାତି'ର କେଇପଦ । ପ୍ରଥମ କୋନ ଗମ୍ଭୀର ଅନ୍ଧକାରରେ ବୁଡ଼ିଯାଇଛି । ଦ୍ୱିତୀୟ କୋନକୁ ସଂପୂର୍ଣ୍ଣ ଆଲୋକ ଆସିଛି । ସେଇଠି ସେମିତି ବସିଥାନ୍ତି ବୀରଦତ୍ୟ । ମୁହଁରେ ତାଙ୍କର ବିନ୍ଦୁ ବିନ୍ଦୁ ଝାଳ । ସେ ଯେମିତି ଝିମ୍ପି ପଡ଼ୁଛନ୍ତି । ହଠାତ୍ ସେ ଚିତ୍କାର କରି ଉଠିଲେ ।]

ବୀରଦତ୍ୟ — ପରିବର୍ତ୍ତନ । ଓଲଟ ପାଲଟ । ନାଁ । ଏ ପରିବର୍ତ୍ତନର ରଥ ଚକକୁ ମୁଁ ଆଗକୁ ଗଡ଼ିବାକୁ ଦେବିନି । ମୋର ସମସ୍ତ ଶକ୍ତି ଖଟେଇ ମୁଁ ଏହାର ପ୍ରତିରୋଧ କରିବି । ଆରେ କେ ଅଛୁରେ !

ବୈଲୋଚନ—(ପ୍ରବେଶ କରିଛନ୍ତି ତାଙ୍କ ହାତରେ ପାନପାତ୍ର)
ଆଜ୍ଞା ମହାରାଜ···ହେ···ହେ···ହେ···ଆପଣଙ୍କ ପ୍ରାସାଦର ସମସ୍ତ ରକ୍ଷୀ ବର୍ତ୍ତମାନ ପ୍ରଜାଗଣଙ୍କ ସହ ଯୁଦ୍ଧରତ । ପ୍ରଜାଗଣ ଚାହାଁନ୍ତି ମିଳିତ ଭାବରେ ଆସି ଆପଣଙ୍କୁ ସାକ୍ଷାତ କରିବେ । ମାତ୍ର ରକ୍ଷୀମାନେ ସେମାନଙ୍କୁ ବାଧା ଦେଉଛନ୍ତି । ବାଧା ନ ମାନିଲେ ସଂହାର କରୁଛନ୍ତି । ସେମାନେ ମରୁ ନାହାନ୍ତି ଯେ ତରି ଯାଉଛନ୍ତି ମହାରାଜ ।

ବୀରଦତ୍ୟ — ମତେ ମିଳିତ ଭାବରେ ସାକ୍ଷାତ କରିବାର କାରଣ —

ବୈଲୋଚନ—କର ଭାରରୁ ମୁକ୍ତି ଏବଂ କବି ଶ୍ରୀକଣ୍ଠ ଓ ତାର ପତ୍ନୀ ମାଳବିକାର ମୁକ୍ତି । ଶ୍ରୀକଣ୍ଠ କୁଆଡ଼େ ତା' କବିତାରେ ଜନ ସାଧାରଣଙ୍କ ମନହରଣ କରି ନେଇଛି ମହାରାଜ ।

ବୀରଦତ୍ୟ—ସେମାନଙ୍କୁ ନିର୍ବିଚାରରେ ସଂହାର କର । କହିଦିଅ ବୈଲୋଚନ ଏହା ସମ୍ରାଟ ବୀରଦିତ୍ୟର ନିର୍ଦ୍ଦେଶ ।

ବୈଲୋଚନ — ସେଥିରେ ଆଉ କଣ ବାକିଅଛି ମହାରାଜ । ମହାମନ୍ତ୍ରୀ ଆଉ ଆମର ଚତୁର ସେନାପତି ନରସଂହାର କାର୍ଯ୍ୟରେ ନିଯୁକ୍ତ ଅଛନ୍ତି ମଣିମା । ହେକିନ୍ତି

ଅଧା ନଙ୍ଗଳା ମଣିଷ ଗୁଡ଼ା ଖାଲି ଗଡ଼ି ପଡ଼ୁଛନ୍ତି । ରାଜ ରାସ୍ତାରେ ଆଉ ବାଟ ନାହିଁ ମଣିମା ।

ବାଗ୍‌ଦିତ୍ୟ -- ଆତୁର ନିର୍ମମ ହେବାକୁ ପଡ଼ିବ ବୈଲୋଚନ, ଆତୁର .....

ବୈଲୋଚନ—ନିଷ୍ଟୟ ମହାରାଜ, ଅଲବତ୍ ..... (ହାତରୁ ସମସ୍ତ ରହିଯାଇ) ମହାରାଜ ଏ ସବୁର କଣ (ପାନ ପାତ୍ର ଦେଖାଇ) ଆଜି ଆଉ ସଦ୍‌ବ୍ୟବହାର ହବନି । ହେଃ.. ହେଃ . ହେଃ.. ବିଚଳିତ ମନକୁ ଶାନ୍ତ ଦିଅନ୍ତୁ ମହାରାଜ । ରାଜନର୍ତ୍ତକୀ ବି ଅପେକ୍ଷମାଣା ହେଃ ..ହେଃ ..

ବାଗ୍‌ଦିତ୍ୟ—ବେଶ୍ .. ତମର ବୁଦ୍ଧିକୁ ତାରିଫ୍ ନକରି ରହିପାରୁନି ବୈଲୋଚନ । (ବୈଲୋଚନ ପାନ ପାତ୍ର ବଢ଼ାଇ ଦେଉଥିଲେ । ରାଜା ବି ନିଃଶେଷ କରି ଚାଲିଥିଲେ । ରାଜନର୍ତ୍ତକୀ ନୃତ୍ୟଶେଷ କରି ଚାଲିଗଲେ । ) ବୁଝିଲ ବୈଲୋଚନ । ମୁଁ ଏକ ନରମେଧ ଯଜ୍ଞର ଆୟୋଜନ କରିବି । ସବୁ ପ୍ରଜାଙ୍କୁ ମୁଁ ସେଥିରେ ଆହୂତ ଦେବି । ଅବାଧ, ଅବିରତ ।

ବୈଲୋଚନ—ଶୀଘ୍ର ଆୟୋଜନ କରନ୍ତୁ ମହାରାଜ, ତା ହେଲେ ଆପଣଙ୍କ ସହମତ ଆମ୍ଭେମାନେ ଶାନ୍ତିରେ ବି ଟିକେ ନିଶ୍ୱାସ ମାରିବୁ ।

ବାଗ୍‌ଦତ୍ୟ—ମୁଁ ଆସୁଛି ତା ହେଲେ ବୈଲୋଚନ, ମୋର ବିଶ୍ରାମ ଦରକାର, ସେ ଟଳମଳ ଅବସ୍ଥାରେ ଉଠୁଥିଲେ (ଧରି ପକେଇଛନ୍ତି ବୈଲୋଚନ)

ବୈଲୋଚନ—(ତାଙ୍କୁ ବାଟ କଢ଼ାଇ ନେଉଥିଲେ) ଆସନ୍ତୁ ମଣିମା । ଆରେ କେ ଅଛରେ ତଫାତ୍ ହୋଇ ଯା... ...ତଫାତ୍ ହୋଇ ଯା, ମଣିମା ମହାପରାକ୍ରମ ଶାଳୀ ଏକ—ଛତ୍ରାଧିପତି ସମ୍ରାଟ ବାଗ୍‌ଦତ୍ୟ ଅନ୍ତଃପୁରକୁ ବିଜେ ହଉଚନ୍ତି— ତଫାତ୍ ହୋଇଯା ତଫାତ୍ ହୋଇଯା (ସେ ବାଗ୍‌ଦତ୍ୟଙ୍କୁ ଧରି ଚାଲିଗଲେ ।)

[ମଞ୍ଚ ଖାଲି ପଡ଼ିଲା କିଛି ସମୟ । ବାଦ୍ୟଯନ୍ତ୍ରର ଆଳାପ ଚାଲିଥାଏ । ବାଦ୍ୟ ଯନ୍ତ୍ରର ଆଳାପ ମଧ୍ୟରେ ସମୟ ଗଡ଼ିଯିବାର ସ୍ପଷ୍ଟ ସୂଚନା । ସେଇ ଦରବାର । ପ୍ରବେଶ କଲେ ସେନାପତି ସୂର୍ଯ୍ୟସେନ । ରକ୍ଷୀ ଆଣି କବି ଶ୍ରୀକଣ୍ଠଙ୍କୁ ଛାଡ଼ି ଦେଇ ପ୍ରତ୍ୟାବର୍ତ୍ତନ କଲି । ଶ୍ରୀକଣ୍ଠ ଦୀର୍ଘଦିନର କାରାବାସ ମଧ୍ୟରେ ଖୁବ୍ ଜୀର୍ଣ୍ଣଶୀର୍ଣ୍ଣ ହୋଇପଡ଼ିଛନ୍ତି ଓ ଦାରୁଣ ରୋଗଗ୍ରସ୍ତ ମଧ୍ୟ । ରାଜାଙ୍କ ନିର୍ଦ୍ଦେଶରେ ତାଙ୍କ ଚକ୍ଷୁ ଦ୍ୱୟ ମଧ୍ୟ ଉତ୍ପାଟିତ କରି ଦିଆଯାଇଛି ।]

ସୂର୍ଯ୍ୟସେନ – ଏବେ କୁହ ଶ୍ରୀକଣ୍ଠ ତୁମେ ରାଜ ପ୍ରଶସ୍ତି ଗାନ କରିବ କି ନା ।

ଶ୍ରୀକଣ୍ଠ—ନାଁ । ସେନାପତି ଥରେ କହିଚି ନାଁ । । କୌଣସି କାମୁକ ଲମ୍ପଟରାଜାର ଓ ତାର ପାଦଚଟା କୁକୁରମାନଙ୍କ ସ୍ତୁତିଗାନ କଲେ ମୋ ବିବେକ ନିକଟରେ ମୁଁ ଅପରାଧି ହୋଇ ପଡ଼ିବି ।

ସୂର୍ଯ୍ୟସେନ—ସଇତାନ ! ତୁମର ଚକ୍ଷୁ ଉତ୍ପାଟନ ପରେ ବି ତୁମେ ତୁମର ଅହଂ ଛାଡ଼ି ନାହିଁ । (ଗୁକୁକ୍‌ରେ ଆଘାତ କଲେ)

ଶ୍ରୀକଣ୍ଠ --(ଅସ୍ପଷ୍ଟ ଚିତ୍କାର କରି) ଅହଂ ନୁହେଁ ଆତ୍ମା, ମୋର ବିବେକବୋଧ, ମାନବିକତା (ମାଡ଼ର ପ୍ରବଳ ଆଘାତରେ ତଳେ ପଡିଯାଇଛି)

ସୂର୍ଯ୍ୟସେନ--ହୁଁ ମାନବିକତା (ଗୋଡ଼ରେ ଫିଙ୍ଗି ଦେଇଛନ୍ତି ଦୂରକୁ । ) ମନେରଖ ଶ୍ରୀକଣ୍ଠ ଶାସ୍ତିର ଏଇ ଆରମ୍ଭ ମାତ୍ର । ଏହାପରେ ଆମେ ତୁମର ଜିହ୍ୱା ଉତ୍ପାଟନ କରିନେବୁ । ଦେହର ପ୍ରତି ଅଂଗ ପ୍ରତ୍ୟଙ୍ଗକୁ ଆମେ ଛିନ୍‌ଭିନ୍‌ କରି ଛଡ଼େଇ ଦବୁ ଆଉ ତୁମକୁ ହସ୍ତି ପଦତଳେ ଏକ ମାଂସଳ ପିଣ୍ଡ ରାସ୍ତାରେ ଫିଙ୍ଗି ଦିଆଯିବ ।

ଶ୍ରୀକଣ୍ଠ—ମୁଁ କୌଣସି ଦଣ୍ଡକୁ ଖାତିର କରେନା । ସେନାପତି ! ବଞ୍ଚିବା ଲାଭ କଣ ? ନିର୍ଲଜ୍ଜ ଆପଣମାନେ । କାରାକକ୍ଷରେ ମାଳବିକାସହ ଏକତ୍ର ରହିବାକୁ ଆପଣମାନେ ବି ଦେଲେନି । ଅନ୍ତତଃ ଦୁଇ ଜଣ ଶାନ୍ତିରେ ମରିପାରିଥାନ୍ତୁ ।

ସୂର୍ଯ୍ୟସେନ – ମାଳବିକା ସମ୍ରାଟ ବାସୁଦେବତ୍ୟଙ୍କର ଅଙ୍କ ଶାୟିନୀ ହେବ ଶ୍ରୀକଣ୍ଠ । ତା ପାଇଁ ଆମେ ଅନେକ ପ୍ରଲୋଭନର ଦ୍ୱାର ଉନ୍ମୁକ୍ତ କରି ରଖିଛୁ ।

ଶ୍ରୀକଣ୍ଠ – ଏହା ଆପଣ ମାନଙ୍କର ଦୁଃସ୍ୱପ୍ନ । କବି ପତ୍ନୀ ମାଳବିକା ଇତର ସ୍ତ୍ରୀ ନୁହେଁ ।

ସୂର୍ଯ୍ୟସେନ – ମୋ ଆଦେଶଏବେ ପାଳନ କର ଶ୍ରୀକଣ୍ଠ !

ଶ୍ରୀକଣ୍ଠ—ହଁ ଆଦେଶ ରାଜପ୍ରଶସ୍ତି ଗାଇବାକୁ ପଡ଼ିବ । ଓଃ···ହଁ ଗାଇବି । ପାଞ୍ଚ ଦିନର ଉପବାସ ସେଥିରେ ପୁଣି ଦି ଦିନ ହେବ ପାଣି ବି ପିଇନି । ଗାଇବି ··

ମୁନ୍ଦେ ପାଣି····· ଆଗ ମୁନ୍ଦେ ପାଣି ।

(ସେ ତୃଷାରେ ଅସ୍ଥିର ହୋଇ ପଡ଼ୁଥିଲେ)

ସୂର୍ଯ୍ୟସେନ—ଆରେ ! କେ ଅଛରେ
ରକ୍ଷୀ—(ପ୍ରବେଶ କରି) ଆଦେଶ କରନ୍ତୁ ମହାମନ୍ତ୍ରୀ ।
ସୂର୍ଯ୍ୟସେନ—ବନ୍ଦୀ ଶ୍ରୀକଣ୍ଠ ଲାଗି ପାଣି······
(ସେ ସାମାନ୍ୟ ହସିଲେ ବଦ୍ରୂପାତ୍ମକ ଭଙ୍ଗୀରେ ଯାହାର ଅର୍ଥ ବୁଝି ପାରିଲା ରକ୍ଷୀ)

ଶ୍ରୀକଣ୍ଠ—ଓଃ · ଶୋଷରେ ତଣ୍ଟି ଶୁଖି ଅଠା ଅଠା ହୋଇ ଯାଉଛି । ଓଃ···
ଛାତିରେ ଖୁବ୍ ଯନ୍ତ୍ରଣା । (ସେ ଅଣ୍ଟାଳି ଅଣ୍ଟାଳି ଆଗକୁ ଆସୁଥିଲେ )
(ରକ୍ଷୀ ଏକ ଶୂନ୍ୟ ମାଟି ପାତ୍ର ନେଇ ପ୍ରବେଶ କରଛି)
ସୂର୍ଯ୍ୟସେନ– ଏଇ ନିଅ ପାଣି । (ରକ୍ଷୀ ଶୂନ୍ୟ ମାଟି ପାତ୍ରକୁ ଦେଲେ ଶ୍ରୀକଣ୍ଠକୁ ।
ଶ୍ରୀକଣ୍ଠ ପାତ୍ରଟିକୁ ଅଣ୍ଟାଳି ଧରି ମୁହଁରେ ଲଗାଇଲେ)

ଶ୍ରୀକଣ୍ଠ—କାହିଁ···ପାଣି କାହିଁ···(ମାଟି ପାତ୍ର ଏହା ମଝିରେ ତାଙ୍କ ହାତରୁ ପଡ଼ି
ଚୂନା ହୋଇଯାଇଥିଲା) ପାଣି କାହିଁ । ମନ୍ତ୍ରୀ ମହାଶୟ । ଏ ଯେ ଶୁଷ୍କ ପାତ୍ର ।

ସୂର୍ଯ୍ୟସେନ—ହାଃ···ହାଃ···ହାଃ···ରାଜ ପ୍ରଶସ୍ତି ଗାନ କର ଶ୍ରୀକଣ୍ଠ , ତୁମକୁ ପାନ
ଭୋଜନ ଉଭୟ ମିଳିବ ।

ଶ୍ରୀକଣ୍ଠ—ଓଃ···ଭଗବାନ·· ଛାତି ଭିତରେ ଅନେକ କଷ୍ଟ । (କିଛି ସମୟ ରହି) ହଁ
ଗାଉଛି··· ( ପରେ ଦୃଢ଼ ହୋଇ )

ରାଜକର୍ମଚାରୀମାନଙ୍କର ସ୍ତୁତିଗାନ କରୁଛି ଏବେ···

ସଙ୍ଗୀତ—

ଚାଲରେ ଦଳିତ ପୀଡ଼ିତ ଜାତି
ଦମ୍ଭହରା ଉଠରେ ମାତି ।
ଶୋଷଣ ପେଷଣ ଚୂର୍ଣ୍ଣ କରି
ଅନ୍ୟାୟ କାରା ଭାଙ୍ଗି ଦିଅ ।
ଜାଗରେ ଜାଗ ନବୀନ ଯୁଗର ଶିଶୁ ।

ସୂର୍ଯ୍ୟସେନ—(ଚିତ୍କାର କରି) ଶ୍ରୀକଣ୍ଠ । ସଇତାନ (ସେ ତାଙ୍କୁ ପ୍ରହାର
କରୁଥିଲେ )

ଶ୍ରୀକଣ୍ଠ—ହଁ ସେନାପତି । ସେଇମାନଙ୍କ ପାଇଁ ଏ ଗୀତ ଯେଉଁମାନେ ଦିନେ ଏ
ରାଜଗାଦି ଦଖଲ କରିବେ । କେତେଦିନ ଭୂସ୍ୱାମୀର ଅନ୍ୟାୟ ଚାଲିବ । ଅନ୍ଧାର
ରାତି ନିଶ୍ଚିତ ପାହିବ ଆଜି । ମୋର ଅନ୍ଧ ଚକ୍ଷୁରେ ମୁଁ ଦେଖି ପାରୁଛି ।
ପୂର୍ବାକାଶ ଲାଲ୍ ହୋଇ ଗଲାଣି । ସୂର୍ଯ୍ୟୋଦୟ ଅଳ୍ପ ସମୟ ବାକି ।

ସୂର୍ଯ୍ୟସେନ —(ପୁଣି ଆଘାତ କରି) ତୁମ ଜୀବନର ସୂର୍ଯ୍ୟାସ୍ତ ପାଇଁ ଅପେକ୍ଷା କର ମୂର୍ଖ ।

[ବହୁ ଲୋକଙ୍କର କୋଳାହଳ ଶୁଣାଗଲା ଏବଂ ଏହା ଆହୁରି ପାଖେଇ ଆସିଲା ତଳେ ପଡ଼ି ସେମିତି ପାଣି ପାଇଁ ଚିତ୍କାର କରୁଥାନ୍ତି ଶ୍ରୀକଣ୍ଠ ଏବଂ ଅଣ୍ଡାଳୁଥାନ୍ତି ଭୂମିକୁ । କିଛି ସମୟ ପରେ ବନ୍ଦୀରକ୍ଷୀ ମାଳବିକାକୁ ଆଣି ଛାଡ଼ି ଦେଇଗଲା ରକ୍ଷୀ । ମାଳବିକା ଶ୍ରୀକଣ୍ଠଙ୍କୁ ଦେଖି ଧାଇଁ ଯାଇଛି ତା ନିକଟକୁ ]

ମାଳବିକା—କବି ! ଏ ସବୁ କ'ଣ ହୋଇଗଲା ।

ଶ୍ରୀକଣ୍ଠ – (ଧୀର କଣ୍ଠରେ) ମାଳବିକା ।

(ପ୍ରବେଶ କଲେ ରାଜା ବୀରାଦିତ୍ୟ)

ବୀରାଦିତ୍ୟ—ଓ··· ···ସୂର୍ଯ୍ୟସେନ

ସୂର୍ଯ୍ୟସେନ – ରାଜାଦେଶ ଅମାନ୍ୟର ପ୍ରତିଫଳ ଭୋଗ କରୁଛି କବି ଶ୍ରୀକଣ୍ଠ ।

ବୀରାଦିତ୍ୟ – ସେନାପତି ! ଲକ୍ଷ ଲକ୍ଷ କଙ୍କାଳସାର ପ୍ରଜା ରାଜଦ୍ୱାର ଅବରୋଧ କରୁଛନ୍ତି । ସୈନ୍ୟବାହିନୀ ସହ ସେମାନଙ୍କର ଭୀଷଣ ସଂଘର୍ଷ ଚାଲିଛି । ଏବେ ଦୂତ ସମ୍ବାଦ ଦେଇଗଲା ଯୁଦ୍ଧରେ ମହାମନ୍ତ୍ରୀ ନିହତ । ପ୍ରଜା ବାହିନୀର ନେତା ସାଧୁଚରଣ ମଧ୍ୟ ସେଠି ଉପସ୍ଥିତ । ତୁମେ ଛୁଟି ଯାଅ ସେମାନଙ୍କର ପ୍ରତିରୋଧ କର ।

ସୂର୍ଯ୍ୟସେନ – ମୁଁ ଚାଲିଲି ମହାରାଜ ।

(ସେ ଦ୍ରୁତ ବେଗରେ ଚାଲିଗଲେ)

ମାଳବିକା – କବି ଓଃ (ତାଙ୍କର ଅନ୍ଧ ଚକ୍ଷୁ ଦେଖି) ଏଇ ତୁମର କଣ ହେଲା କବି ? କଣ ହେଲା ?

ଶ୍ରୀକଣ୍ଠ—କଏ ମାଳବିକା । ମୋର ଚକ୍ଷୁ ରାଜାଙ୍କ ଆଦେଶରେ ରାଜକର୍ମଚାରୀମାନେ ଉତ୍ପାଟିତ କରି ଦେଇଛନ୍ତି । ମାଳବିକା···ତୁମେ ···(ସେ ତାଙ୍କୁ ଅଣ୍ଡାଳି ପକାଉଥିଲେ) ମୋତେ ଟୋପେ ପାଣି ଦେଇ ପାରିବ ମାଳବିକା । ଶୋଷରେ ମୋ ଛାତି ଫାଟି ଯାଉଛି ।···ଆଃ···ଆଃ

ମାଳବିକା—(ଚିତ୍କାର କରି) କବି ! ଥରେ ହେଲେ ଚାହିଁ କବି ।

ଶ୍ରୀକଣ୍ଠ—ଓଃ ··ପାଣି ମାଳବିକା ପାଣି···ଆଃ······ଆଃ (ସେ ମୃତ୍ୟୁବରଣ କରିଛନ୍ତି ଓ ଚିତ୍କାର କରି ତାଙ୍କ ଉପରେ ଲୋଟି ପଡ଼ିଛି ମାଳବିକା)

(ଆସିଛନ୍ତି ମହାରାଣୀ ତାଙ୍କର ବେଶଭୂଷା ବିପର୍ଯ୍ୟସ୍ତ)

ମହାରାଣୀ – ମହାରାଜ ଶୀଘ୍ର ରାଜପ୍ରାସାଦ ପରିତ୍ୟାଗ କରି ଚାଲି ଯାଆନ୍ତୁ । ସୈନ୍ୟବାହିନୀର ଶତ ପ୍ରତିରୋଧ ସତ୍ତ୍ୱେ ସିଂହଦ୍ୱାର ଭାଙ୍ଗି ଅସଂଖ୍ୟ ନରନାରୀ ପ୍ରଜା ଛୁଟି ଆସୁଛନ୍ତି । ସେମାନେ କାରାଗାର ଭାଙ୍ଗି ବନ୍ଦୀମାନଙ୍କୁ ମୁକ୍ତ କରି ଦେଲେଣି । ରାଜପ୍ରସାଦ ବର୍ତ୍ତମାନ ଧ୍ୱସ୍ତ ବିଧ୍ୱସ୍ତ ।

ବୀରାଦିତ୍ୟ – (ମାଳବିକା ଆଡ଼କୁ ଅଗ୍ରସର ହୋଇ) ମୁଁ ଯଦି ପଳାୟନ କରେ ତେବେ ମାଳବିକାକୁ ନେଇ ପଳାୟନ କରିବି ।

ମହାରାଣୀ – (ଶ୍ରୀକଣ୍ଠ ଓ ମାଳବିକାକୁ ଦେଖି) ମାଳବିକା । ଶ୍ରୀକଣ୍ଠ ! କଣ ତମେ କଲ ରାଜା !

ମାଳବିକା—(ମହାରାଣୀଙ୍କୁ) ମହାରାଣୀ । ମୋର ଅବଲମ୍ବନ । ବଞ୍ଚିବାର ରାସ୍ତା ଅପସରି ଯାଇଛି । ଶ୍ରୀକଣ୍ଠର କଣ୍ଠସ୍ୱର ଚିରଦିନ ଲାଗି ନୀରବ ହୋଇ ଯାଇଛି ।

ମହାରାଣୀ—ଅନେକ ହୋଇଗଲା । ସମୟ ଖୁବ୍ ଅଳ୍ପ । ପ୍ରଜାବାହିନୀ ମାଡ଼ି ଆସୁଛନ୍ତି ମାଳବିକାକୁ ମୁକ୍ତଦେଇ ଚାଲିଯାଅ ରାଜା·

ବୀରାଦିତ୍ୟ—ମୋ ଆଗରୁ ଦୂରେଇ ଯାଅ ରାଣୀ ନଚେତ୍···

ମହାରାଣୀ—ନାଁ । ମହାରାଜ– ନାଁ ।

(ସେ ତାଙ୍କ ଆଗରେ ଠିଆ ହୋଇଯାଇଛନ୍ତି)

ବୀରାଦିତ୍ୟ – ବେଶ୍ ତା ହେଲେ (ଶାଣିତ ତରବାରୀ ଭୁଷି ଦେଇଛନ୍ତି । ତାଙ୍କ ଛାତିରେ । ପରେ ଅନୁତପ୍ତ ହୋଇଛନ୍ତି ଓ ହାତରୁ ଖସି ପଡ଼ିଛି ତରବାରୀ) କାଦମ୍ବିନୀ !

ମହାରାଣୀ – (ରକ୍ତାକ୍ତ ହୋଇ ତଳେ ପଡ଼ି) ଆଃ···ହଁ ମହାରାଜ । ଏ ମୋର ପୁରସ୍କାର । ପାପି ମହାରାଣୀ କାଦମ୍ବିନୀର ପୁରସ୍କାର । ତଥାପି ମୋର ଶେଷ ଅନୁରୋଧ ପଳାୟନ କର । ସେମାନେ ଆସୁଛନ୍ତି ଏକ ପରିବର୍ତ୍ତନଙ୍କୁ ସଙ୍ଗରେ ଧରି । ସବୁ ବଦଳି ଯିବ···ହଁ · ବଦଳିଯିବ । (ସେ ସେମିତି ରକ୍ତାକ୍ତ ଅବସ୍ଥାରେ ତଳେ ଲେଟି ପଡ଼ିଲେ)

ବୀରାଦିତ୍ୟ – ଉଠି ଆସ ମାଳବିକା । ଧ୍ୱଂସ ହେଉ ରାଜ୍ୟ, ରାଜବାଟୀ, ତଥାପି ମୁଁ ତୁମକୁ ଚାହେଁ···ଏକାନ୍ତ ଭାବରେ ଚାହେଁ ! (ସେ ଅଗ୍ରସର ହେଉଥିଲେ ମାଳବିକା ଆଡ଼କୁ ।)

ମାଳବିକା --(ପଡ଼ିଥିବା ତରବାରି ଧରି ଆତ୍ମ ରକ୍ଷାର ଚେଷ୍ଟା କରୁଥିଲେ ଘୃଣି ଯାଆନ୍ତୁ ମହିମା । ସତୀ ସୀତାଙ୍କର କୋପାନଳରେ ସ୍ୱର୍ଣ୍ଣଲଙ୍କା ଧ୍ୱଂସ ହୋଇ ଯାଇଥିଲା । ଅତ୍ୟାଚାରୀ ରାବଣର ବିନାଶ ଘଟିଥିଲା । ସେ ସମୟ ଆଉ ବେଶି ଡେରି ନାହିଁ । ସମୟର ସ୍ପନ୍ଦନକୁ ଆପଣ ଏଡ଼େଇ ଦେଇ ପାରିବେ ନାହିଁ ମହାରାଜ ।

[ଲୋକମାନେ ଚତୁର୍ଦ୍ଦିଗରେ ଝେଞ୍ଚି ଯାଉଥିଲେ । ସେମାନଙ୍କର କୋଳାହଳରେ ରାଜପ୍ରାସାଦର କୋଣ, ଅନୁକୋଣ ମୁଖରିତ ହୋଇ ଉଠୁଥିଲା । ପ୍ରବେଶ କଲେ ଝଡ଼ ବେଗରେ ପ୍ରଜାମାନଙ୍କର ବିଦ୍ରୋହୀ ନେତା ସାଧୁଚରଣ । ତାଙ୍କ ସହ ଅସ୍ତ୍ର ଶସ୍ତ୍ର ମଶାଲ ଓ ଲାଠି ଧାରୀ ଆଉ ପାଞ୍ଚ ଛଅ ଜଣ ପ୍ରଜା]

ସାଧୁଚରଣ – ଏଇ ଯେ ରାଜା ବୀରାଦିତ୍ୟ । ବନ୍ଧୁଗଣ । ରାଜାଙ୍କ ହସ୍ତରେ ଶୃଙ୍ଖଳ ଦେଇଦିଅ ।

ବୀରାଦିତ୍ୟ—ସାବଧାନ ! କିଏ ତୁମେ ?

ସାଧୁଚରଣ – ମୁଁ ଅଗଣିତ ପ୍ରଜାଙ୍କ ମଧ୍ୟରୁ ଜଣେ ଆଜ୍ଞା ! ମୋ ନାଁ ସାଧୁଚରଣ ।

ବୀରାଦିତ୍ୟ – ଓଃ —ବିଦ୍ରୋହୀ ନେତା ସାଧୁଚରଣ ।

ସାଧୁଚରଣ - ହଁ ମହାରାଜ । ରାଜ୍ୟର ସମୁଦାୟ ପ୍ରଜା ଆଜି ଏକଜୁଟ ହୋଇଛନ୍ତି । ଅତ୍ୟାଚାରର ଦିନ ଶେଷ ହୋଇ ଯାଇଛି ମୁଁ ଆଣି ଆସିଛି ମୁକ୍ତିର ନୂଆ ବାର୍ତ୍ତା । ପୁରାତନର ଧ୍ୱଂସସ୍ତୂପ ମଧ୍ୟରୁ ଏକ ନୂତନ ମୂଲ୍ୟବୋଧ ଜନ୍ମ ନେବ । ରାଜା ବୀରାଦିତ୍ୟ । ପ୍ରଜାଗଣ ରାଜପ୍ରସାଦକୁ ସଂପୂର୍ଣ୍ଣ ଦଖଲ କରି ନେଇଛନ୍ତି । ସବୁ ବନ୍ଦୀ ଏବେ ମୁକ୍ତ । (ଭୂମିରେ ପଡ଼ିଥିବା କବି ଶ୍ରୀକଣ୍ଠ ଓ ମହାରାଣୀଙ୍କୁ ଦେଖି ପକେଇ) ଭଉଣୀ ମାଳବିକା । ନାଁ । ଆମର ବିଳମ୍ବ ହୋଇଗଲା । କବି ଶ୍ରୀକଣ୍ଠ ଆଉ ନାହାଁନ୍ତି । (ରାଜାଙ୍କୁ ଚାହିଁ)

ଅତ୍ୟାଚାରୀ ଉଦ୍ଧତ ରାଜା ବୀରାଦିତ୍ୟ । ଏଇଠି ତୁମ ଶାସନର ପୂର୍ଣ୍ଣଚ୍ଛେଦ ପଡ଼ିଲା ଏଣିକି କର୍ଣ୍ଣପୁର ରାଜ୍ୟର ପ୍ରଜାତନ୍ତ୍ର ହିଁ ପ୍ରତିଷ୍ଠିତ ହେବ । ବନ୍ଧୁଗଣ ଆଉ ବିଳମ୍ବ କାହିଁକି ? ବୀରାଦିତ୍ୟଙ୍କୁ ନେଇଚାଲ । ଜନତାର ଦରବାରରେ ସେ ଶାସ୍ତି ପାଇବେ ।

ବୀରାଦିତ୍ୟ – ଆରେ କିଏ ଅଛରେ ?

ସାଧୁଚରଣ—କେହି ନାହାନ୍ତି ମହାରାଜ । ପ୍ରଜା ବାହିନୀ ନିକଟରେ ସମସ୍ତେ ପରାସ୍ତ ସ୍ୱୀକାର କରିଛନ୍ତି । ଏଣିକି ନୂଆ ସମସ୍ତ ନୂଆ ଯୁଗ । କବି ଶ୍ରୀକଣ୍ଠ, ମୃତ୍ୟୁବରଣ କରିଛନ୍ତି ସତ, ହେଲେ ତାଙ୍କ ରଚିତ ସଙ୍ଗୀତ ହେବ ଆଜିଠୁ କର୍ଣ୍ଣପୁର ରାଜ୍ୟର ଜାତୀୟ ସଙ୍ଗୀତ । ଆସ ବନ୍ଧୁଗଣ ! [ସେମାନେ ବୀରଦତ୍ତଙ୍କୁ ବନ୍ଧନ କରି ନେଇ ଯାଉଥିଲେ, ଜନସଙ୍ଘର ଶବ୍ଦ ସହ ମଞ୍ଚର ଆଲୋକ ପରିବର୍ତ୍ତିତ ହେଲା । ଦ୍ୱିତୀୟ କୋନ୍ ଅନ୍ଧକାରରେ ବୁଡ଼ିଗଲା ଏବଂ ପ୍ରଥମ କୋନରେ ଆଲୋକ ଆସିଲା ବେଳକୁ ଦେଖାଗଲା ପୂର୍ବର ସେଇ ଲୋକଟି ଜ୍ୱଳନ୍ତ ମଶାଲ ଧରି ଧାଉଁଥିଲା ମଞ୍ଚର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ । ମଞ୍ଚର ଆଲୋକ କ୍ରମଶଃ ଲାଲ୍ ରଙ୍ଗରେ ଉଦ୍‌ଭାସିତ ହୋଇ ଉଠିଲା । ଡ଼ଗର ଆସି ନାଗରା ବଜେଇ କହୁଥିଲା]

ଡ଼ଗର—(ନାଗରା ପିଟି) ଭାଇ ଓ ଭଉଣୀମାନେ ଆଜିଠାରୁ କର୍ଣ୍ଣପୁରରେ ରଜା ରାଜୁଡ଼ା ଶାସନ ଗଲା । ପ୍ରଜାମାନେ ଦେଶର ପ୍ରକୃତ ଶାସକ ହେଲେ । ସାଧୁଚରଣ ଓ ଅନ୍ୟ ଲୋକ ପ୍ରତିନିଧିମାନେ ଦେଶ ଶାସନ କରିବେ — (ନାଗରା ଶବ୍ଦ) ଓ କିଛି ସମୟ ପରେ ସମୁଦାୟ ମଞ୍ଚ ଅନ୍ଧକାରରେ ବୁଡ଼ିଗଲା )

(ଯବନିକା ନଇଁ ଆସିବା ସଙ୍ଗେ ସଙ୍ଗେ ଶୁଭୁଥିଲା ସେଇ ସଙ୍ଗୀତର କିୟଦଂଶ—)

[ ଧୂଳିରେ ଦଳିତ ପୀଡ଼ିତ ଜାତି
ସର୍ବହରା ଉଠରେ ମାତି
ଶୋଷଣ ପେଷଣ ଚୂର୍ଣ୍ଣ କରି
ଅନ୍ୟାୟ କାରା ଭାଙ୍ଗି ଦିଅ
ଜାଗରେ ନବୀନ ଯୁଗର ସାଥି ].



[ ଆଲୋକ ଆସିଲା ପ୍ରଥମ କୋନ୍‌ରେ । ସହରର କମ୍ପା ଗ୍ରାମାଞ୍ଚଳର କୌଣସି ଏକ ରାସ୍ତା । ପୂର୍ବରୁ ଯେଉଁମାନେ ପାଲା ପରିବେଷଣ କରୁଥିଲେ ସେମାନେ ଏବେ ଏଠି ଦଣ୍ଡାୟମାନ । ସେମାନଙ୍କ ପୋଷାକ ପରିଚ୍ଛଦରେ ମଧ୍ୟ ପରିବର୍ତ୍ତିନ ହୋଇଛି । ସେମାନଙ୍କ ମଧ୍ୟରୁ ଜଣେ ବାଉଁଶରେ ବାନ୍ଧି ଗୋଟିଏ ବଡ଼ ଛବି ଧରିଛି,' ଜଣେ ଧରିଛି ହାରମୋନିୟମ୍; ଆଉ ଜଣେ ମୃଦଙ୍ଗ ବା ସେମିତି ବାଦ୍ୟ ଯନ୍ତ୍ର ବିଶେଷ, ଆଉ ଜଣେ ସେମାନଙ୍କ ସହ ପାଳି ଧରୁଛି । ଯେ ଗାୟକ ସେ କାନ୍ଧରେ ଗୋଟିଏ ଝୁଲା ବ୍ୟାଗ ପକାଇଛନ୍ତି । ତାଙ୍କର ପରିଧେୟ ପୁରା ଜାମା ଓ ଲୁଗା । ହାତରେ ସେ ଚଟି ବହି କେତେଖଣ୍ଡ ଧରିଛନ୍ତି ଓ ଗୀତ ଗାଉଛନ୍ତି । ଶ୍ରୋତା ଭାବରେ ପ୍ରାୟ ଆଠ ଦଶ ଜଣ ସେ ସ୍ଥାନରେ ଜମି ଯାଇଛନ୍ତି । ]

ଗାୟକ — (ଦର୍ଶକମାନଙ୍କୁ) ଭାଇ ଓ ଭଉଣୀମାନେ । କିରଣପୁରର ଜଘନ୍ୟ ହତ୍ୟାକାଣ୍ଡ । ଜଣେ ବିଶିଷ୍ଟ ଶିଳ୍ପପତି ଓ ଜଣେ ବିଶିଷ୍ଟ ନେତା ଆଉ ତାଙ୍କର ସହକର୍ମୀମାନଙ୍କର କାମ ଲାଳସାର ଶିକାର ହୋଇ କିଶମାଝି ମାଳତୀ ଯେଉଁ ପରି ନିର୍ଯ୍ୟାତନା ସହି ମୃତ୍ୟୁ ବରଣ କଲା ତାହା ଆପଣମାନେ ମନ ଦେଇ ଶୁଣନ୍ତୁ ।

ଆସି ହେଲା କଳି କାଳ ଗୋ
ଆସି ହେଲା କଳି କାଳ
ସୁଜନମାନେ ତ ରସାତଳ ଗଲେ
ଦୁର୍ଜନ ହେଲେ ପ୍ରବଳ ।
ଆଉ ନାହିଁ ନ୍ୟାୟ ନୀତି ଗୋ
ଆଉ ନାହିଁ ନ୍ୟାୟ ନୀତି
ଚଉଦିଗେ ଖାଲି ବ୍ୟାପି ଯାଇଅଛି
ଅଧର୍ମ ପାପ ଅନୀତି ।
କିରଣ ପୁରର ଘଟଣା ଶୁଣ ଗୋ
ସାବଧାନେ ଦେଇ ମତି
ରକ୍ଷକମାନେ ତ ଭକ୍ଷକ ସାଜିଲେ
କାହାର ଧରିବ ଗୁତି ।

(ଏତକରେ ସେ ଧରିଥିବା ବହିଗୁଡ଼ିକୁ ଦେଖାଇ ସମବେତ ଦର୍ଶକମାନଙ୍କ ଉଦ୍ଦେଶ୍ୟରେ କହିବାକୁ ଆରମ୍ଭ କଲେ ।)

କରଣପୁରର ବଶିଷ୍ଟ ଶିଳ୍ପପତି ଆଦିତ୍ୟ ପ୍ରତାପ ଓ ତାଙ୍କର ବନ୍ଧୁ ନେତା ସାଧୁଚରଣ ମାଳତୀ ହତ୍ୟାକାଣ୍ଡର କପଟ କାରଣ ହେଲେ ତାହା ଏ ବହିରେ ପ୍ରକାଶ ପାଇଛି ଆଜ୍ଞା—"ମାଳତୀ ହତ୍ୟାକାଣ୍ଡ" ମାତ୍ର କୋଡ଼ିଏଟି ପଇସା ଆଜ୍ଞ ।

ରାଜା ରାଜୁଡ଼ାତ ଗଲେ ସଙ୍ଗାତରେ
ରାଜା ରାଜୁଡ଼ାତ ଗଲେ
ଗଣତନ୍ତ୍ର ନାମେ ଆଉ ଦଳେ ରାଜା
ଶାସନ ଡୋର୍ ଧଇଲେ ।
ଦୁଃଖତ ମେଣ୍ଟିଲା ନାହିଁ ସଙ୍ଗାତରେ
ଦୁଃଖ ତ ମେଣ୍ଟିଲା ନାହିଁ
ଅଣ୍ଟି ଭୁଖି ଯିଦ ଭଣ୍ଟି କାଟି ହଏ
କାହାକୁ କହିବ ଯାଇ ।

[ପ୍ରଥମ କୋନ୍‌ରେ ଆଲୋକ କ୍ରମଶଃ ଅନ୍ଧକାରରେ ରୂପାନ୍ତରିତ ହେଲା । ଗାୟକ ଓ ତାଙ୍କ ଦଳ ପ୍ରଥମେ ନିଶ୍ଚଳ ହୋଇ ଘୋର ଅନ୍ଧକାର ମଧ୍ୟରେ ବୁଡ଼ିଗଲେ । ଆଲୋକ ଅସିଲା ଦ୍ୱିତୀୟ କୋନ୍‌ରେ—ବଶିଷ୍ଟ ଶିଳ୍ପପତି ଆଦିତ୍ୟ ପ୍ରତାପ ମହେନ୍ଦ୍ର ବାହାଦୁରଙ୍କର ଫାକ୍‌ଟ୍ରି ନିକଟରେ ଥିବା ଗୃହର ଡ୍ରଇଁ ରୁମ୍ । ଦାମୀ ସୋଫା ପଡ଼ିଛି । ଟିପୟ ଉପରେ ଆସନ୍ତେ କେତେ ଖଣ୍ଡ ମାଗାଜିନ୍ ; ସାମାନ୍ୟ ଦୂରରେ ଫ୍ଲାଓ୍ୱାରଭେସ୍ କାନ୍ଥରେ କେତେଟା ଅଏଲ ପେଣ୍ଟିଂ । ଆଦିତ୍ୟପ୍ରତାପ ମଧ୍ୟ ବୟସ୍କ । ତାଙ୍କ ଚେହେରାରେ ଗାମ୍ଭୀର୍ଯ୍ୟ ଓ ଔଦ୍ଧତ୍ୟର ଏକ ମିଶାମିଶି ଭାବ । ଆଖିରେ ତାଙ୍କର ମୋଟା ଲେନସ୍‌ର ଚଷମା ।

ଆଦିତ୍ୟ ପ୍ରତାପ ସୋଫାରେ ବସି ଗୋଟେ ଓଡ଼ିଆ ସମ୍ବାଦପତ୍ର ଉପରେ ଆଖି ପକାଉଥିଲେ ଏବଂ ଦାମୀ ସିଗାରେଟ୍ ଟାଣୁଥିଲେ । ହଠାତ୍ ସମ୍ବାଦ ପତ୍ରର ଗୋଟିଏ ସ୍ଥାନରେ ତାଙ୍କ ଆଖି ଅଟକି ଯାଇଛି ଏବଂ କପାଳରେ ରେଖା କୁଞ୍ଚିତ ହୋଇ ଆସିଛି । ସେ କଲିଂବେଲ ଟିପିଲେ । ଆସିଛି ଦରଓ୍ୱାନ ଓ ଠିଆ ହୋଇଛି ।]

ଆଦିତ୍ୟପ୍ରତାପ—(ଖବର କାଗଜରୁ ମୁହଁ ଉଠାଇ) ମ୍ୟାନେଜର ବାବୁଙ୍କୁ ଡ଼ାକ ।
ଦରଓ୍ୱାନ୍—ଆଜ୍ଞା ! (ସେ ଚାଲିଯାଇଛି । ଆଦିତ୍ୟପ୍ରତାପ ପୁଣି କାଗଜ ପଢ଼ାରେ

ମନୋନିବେଶ କରିଛନ୍ତି । ବାହାରୁ ଡାକ ଶୁଭୁଛି ଲୋଚନ ମିଶ୍ରଙ୍କର । ସେ ସେଠିକାର ସରପଞ୍ଚ ।)

ଲୋଚନ--(ବାହାରୁ) ଆଦିତ୍ୟ ପ୍ରତାପ ମହେନ୍ଦ୍ର ବାହାଦୁର ଅଁପଣେ ଅଛନ୍ତି ଆଜ୍ଞା ।

ଆଦିତ୍ୟ ପ୍ରତାପ—କିଏ ? (ସେ ଖବର କାଗଜ ରଖି ଦେଲେ)

ଲୋଚନ – (ଭିତରକୁ ପଶି ଆସି) ମୁଁ ଆଜ୍ଞା ସରପଞ୍ଚ ଲୋଚନ ମିଶ୍ର ହେଃ…ହେଃ .. ହେଃ ମତେ କଣ ଚହ୍ନି ପାରୁ ନାହାନ୍ତି ଆଜ୍ଞା !

(ଲୋଚନ ମିଶ୍ର ବେଶ୍ ବୟସ୍କ ଲୋକ । ପରିଧେୟ ଝଦେଡ଼ ଧୋତି ଓ ପଞ୍ଜାବୀ । ମୁଣ୍ଡଟି ଚନ୍ଦା । ଆଖି ଦୁଇଟିରୁ ମନେହୁଏ ସେ ଖୁବ୍ କୁଟିଳ ସ୍ୱଭାବର ଲୋକ)

ଆଦିତ୍ୟ ପ୍ରତାପ—ଆରେ ! ଲୋଚନ ବାବୁ ସେ । ଆସ ଆସ । କଣ ସେ ତୁମକୁ କହନ୍ତି ? ତୁମକୁ ଚହ୍ନିବ ନାହିଁ ତ ଆଉ କାହାକୁ ଚହ୍ନିବ ? (କିଛି ସମୟ ରହି) ବସ, ତୁମ ସାଙ୍ଗରେ ମୋର ଅନେକ କଥା ଅଛି ଭାବୁଥିଲି ତୁମକୁ ଡ଼ାକେଇ ପଠେଇବି ବୋଲି ।

ଲୋଚନ—ମତେ ପୁଣି ଡ଼ାକେଇ ପଠେଇବା ଦରକାର ପଡ଼ିବ ଆଜ୍ଞା । ଆପଣଙ୍କର ଭୁବନେଶ୍ୱରରୁ ଆସିବା ଖବର ପାଇଲେ ମାନେ ମୁଁ ଜାଣି ପକାଏ । ଏ ଦରିଦ୍ର ଲୋଚନ ମିଶ୍ର ଆପଣଙ୍କର କିଛି ନା କିଛି ସେବାରେ ଆସିବ । ତେଣୁ ଧାଇଁ ଆସେ ସାକ୍ଷାତଟା କରିବାକୁ । ପର ଉପକାରଟିକୁ ଆମେ ଜୀବନରେ ବ୍ରତ ବୋଲି ଧରି ନେଇଛୁ ଆଜ୍ଞା । ହେଲେ ନିନ୍ଦୁକ ମାନେ

ଆଦିତ୍ୟ ପ୍ରତାପ—ସେମାନେ ତ କାଳେ କାଳେ ରହିବେ ଲୋଚନ ବାବୁ । ସେମାନଙ୍କ ଟୀକା ଟିପ୍ପଣୀକୁ ଖାତିର ନ କରିବା ଭଲ ।

ଲୋଚନ—ମୁଁ କଣ ସେଗୁଡ଼ା ଶୁଣେ ? ସେ ଗୁଡ଼ାକ ଶୁଣିଲେ ଆମପରି କ୍ଷୁଦ୍ର କର୍ମୀ ଆଉ ଆପଣଙ୍କ ପରି ମହତ୍ତ୍ୱ ଦେଶସେବୀମାନେ ନିଷ୍ଠାପର ଭାବରେ କଣ କିଛି କରି ପାରିବେ । କହୁଛି ସମାଲୋଚନା କରିଗଲେ କିଛି କଥା ନାହିଁ, ହେଲେ ଗଠନ-ମୂଳକ ସମାଲୋଚନା କିଏ କରନ୍ତି ?

ଆଦିତ୍ୟ ପ୍ରତାପ—(ଗମ୍ଭୀର ହୋଇ କିଛି ସମୟ ପୂର୍ବରୁ ପଢ଼ୁଥିବା ଖବର କାଗଜ ଲୋଚନଙ୍କୁ ଦେଖାଇ) ଆଜି କାଗଜରେ କଣ୍ଟ ଦାସର ବିବୃତି ପଢ଼ିଛ ? କି ବାଜେ । ନିମ୍ନ ସ୍ତରର ଲୋକଟା । ଜେଲରେ ଥାଇ ବିବୃତି ଦେଇଛି ।

ଲୋଚନ—କାହିଁକି ସେ କଥା କହୁଛନ୍ତି ଆଜ୍ଞା । କଣ୍ଟ ଦାସର ଉତ୍ପାତରେ ଆମେ ବେଳୁଟବେଲ ଏଠି ସବୁ ଅସ୍ଥିର ହେଲୁଣି । କଣ କହୁ ଭଲ କାମରେ, ସେବା-ମୂଳକ କାର୍ଯ୍ୟରେ ହାତଦେଇ ହଉଛୁ । ଖାଲି ଗୁଡ଼ାଏ ନିନ୍ଦା, ଅପବାଦ (କାଗଜଟା ନେଇ ଆଖିରେ ଚଷମା ଦେଇ) ଦେଖି କଣ ବାହାରୁଛି·· ହଁ କରଣ ପୁରର ଶ୍ରମିକ ନିର୍ଯ୍ୟାତନା " ।

(ତାପରେ ସଂବାଦଟି ପଢ଼ି କାଗଜ ରଖି) ଏତ ସାଧମତ ଚରିତ ସଂହାର ଆଜ୍ଞା .

ଆଦିତ୍ୟ ପ୍ରତାପ --ସେ ବୋଧେ ଆଦିତ୍ୟପ୍ରତାପ ମହେନ୍ଦ୍ର ବାହାଦୁରଙ୍କୁ ଜାଣିନ ଲୋଚନବାବୁ । ତା ଦେହରେ ରାଜରକ୍ତ ପ୍ରବାହିତ ।

ଲୋଚନ—ମୂର୍ଖ ଅପୋଗଣ୍ଡଟା ଆଜ୍ଞା । ମୂଷିକ ହୋଇ ସିଂହ ସହିତ ପୁଣି ଯୁଦ୍ଧ ।

ଆଦିତ୍ୟ – ତୁମର ମନେଥିବ ଲୋଚନ ବାବୁ ଗତ ବର୍ଷ ତୁମେ ସରପଞ୍ଚ ପାଇଁ ଯେତେବେଳେ ତୁମର ପ୍ରାର୍ଥୀପତ୍ର ଦାଖଲ କରିଥିଲ ।

ଲୋଚନ—ତାକୁ ମୁଁ ଭୁଲି ପାରିବ ଆଜ୍ଞା । ଅକୃତଜ୍ଞ ହେଇ ଯିବିନି । ଆପଣ ଆଉ ସାଧୁବାବୁଙ୍କର ଅକୁଣ୍ଠ ସହଯୋଗ ମିଳି ନ ଥିଲେ ମୁଁ କଣ ଜିତିଥାନ୍ତି । ସେଥିପାଇଁ ତ ଆପଣ ଧନବଳ ମନବଳ ଅର୍ଥ ବଳ ସବୁ ଯୋଗେଇ ଦେଇଛନ୍ତି ଆଜ୍ଞା । ହେଲେ ମୁଁ କଣ ଆପଣଙ୍କ କଥାରୁ କେବେ ବାହାରି ଯାଇଛି ଆଜ୍ଞା ।

ଆଦିତ୍ୟ – ନାଁ । ନାଁ । ଲୋଚନବାବୁ ମୁଁ ସେ କଥା କହୁନି । ତୁମେ ଏଠିକାର ସ୍ଥାନୀୟ ସରପଞ୍ଚ । ଏଠି ମୁଁ ଏବେ କେତେକ ଗୁରୁତର ସମସ୍ୟାର ସମ୍ମୁଖୀନ । ସେ ସବୁର ସମାଧାନ ପାଇଁ ତୁମର ସହଯୋଗ ଏକାନ୍ତ ଆବଶ୍ୟକ ।

ଲୋଚନ—ଯେତେବେଳେ ଯେଉଁ ମୁହୂର୍ତ୍ତରେ ଚାହିଁବେ ଆଜ୍ଞା ।

ଆଦିତ୍ୟ—ଏ ନିପଟ ମଫସଲରେ ଗୋଟେ ବିରାଟ କାରଖାନା ମୁଁ ବସେଇ ଥିଲି ଏକ ମହତ୍ ଲକ୍ଷ୍ୟ ନେଇ । ଇଚ୍ଛା ଥିଲା ଏଠି ଟାଉନ୍‌ସିପ୍ ଡ଼େଭଲପ୍ କରିବି ଲୋକମାନେ. ଶିକ୍ଷିତ ହେବେ, ମାର୍ଜିତ ହେବେ ମାତ୍ର ହେଲା କଣ ?

ଲୋଚନ – ଅଙ୍ଗାର ଶତ ଧୌତେନ ଆଜ୍ଞା ! ସେମାନଙ୍କୁ ଆଲୁଅ ଦେଖାଇବା ଜମା ଠିକ୍ ନୁହେଁ । ସେଇମିତି ଅନ୍ଧାରରେ ଥାଆନ୍ତୁ । ଶିକ୍ଷିତ ହେଲେ ମାନେ ପଛରେ ସଙ୍ଗେ ସାଙ୍ଗେ ଲାଗିଯିବେ ।

ଆଦିତ୍ୟ — କଣ୍ଟ୍ରାସକୁ ଉଚିତ ଶିକ୍ଷା ଦେବାକୁ ପଡ଼ିବ ।

ଲୋଚନ-- ଅଲବତ୍ ଆଜ୍ଞା । ଜେଲ୍ ତ ଯାଉଛି । ତାକୁ ଏଠୁ ଏକଦମ୍ ଉଚ୍ଛେଦ କରିବାକୁ ପଡ଼ିବ ।

ଆଦିତ୍ୟ— ହଁ ଆଉ ଗୋଟେ କଥା । ସାଧୁବାବୁ ମତେ ଏଇ ଅଳ୍ପ ସମୟ ଆଗରୁ ଟେଲିଫୋନ୍ କରିଥିଲେ । ତୁମେ ଜାଣିଥିବ ସେ ଆମ କମ୍ପାନୀର ବୋର୍ଡ ଅଫ ଡାଇରେକ୍ଟରସ୍‌ରେ ଅଛନ୍ତି ତା ଛଡ଼ା ସ୍ଥାନୀୟ ଲୋକ ପ୍ରତିନିଧିତ । ସେ ବି ଏଠି ଶ୍ରମିକ ବସ୍ତିର ଗୋଟେ ଡ଼ାକ୍ତରଖାନା ଉଦ୍‌ଘାଟନ କରିବେ ।

ଲୋଚନ—ସେଠି ଯନ୍ତ୍ର ଶ୍ରମିକ ଗୁଡ଼ା କିଛି ଉତ୍ପାତ ଆରମ୍ଭ କରି ଦଅନ୍ତି···ମାନେ ଦାବୀପତ୍ର କଳାପତାକା ଏମିତି କିଛି···

ଆଦିତ୍ୟ — ହାଃ···ହାଃ···ହାଃ ·· ସାଧୁଚରଣ ଏମିତି ସେମିତି ଲୋକ ନୁହନ୍ତି ଲୋଚନ ବାବୁ । ସେ ଆସିବା ଆଗରୁ ଏଠି କଡ଼ା ପ୍ରହରୀର ବନ୍ଦୋବସ୍ତ ସରିଛି । ସରକାରୀ କଳର ସମସ୍ତ ପଦସ୍ଥ ଅଫିସର ପୋଲିସ୍‌ର କଡ଼ା ନିରାପତ୍ତା ମଧ୍ୟରେ ସେ ଆସିବେ ଆଉ ଯିବେ···ତା ଛଡ଼ା ଆମ କାରଖାନାର ଶ୍ରମିକ ଅଶାନ୍ତି ଓ ତାଲା ବନ୍ଦ ସଂପର୍କରେ ଆମେ ତ ତାଙ୍କୁ ରିପୋର୍ଟ ଦେଇ ସାରିଛୁ ।

ଲୋଚନ — ମଜା ହେବ ଆଜ୍ଞା । ଖୁବ୍ ମଜା ହେବ । ଯଦି ତାଙ୍କ ସଖରେ ଶ୍ରମିକମାନେ କିଛି ପାଟିତୁଣ୍ଡ କରନ୍ତି ପୋଲିସ୍ ସାବାଡ଼୍ କରି ଦେବନି ଆଜ୍ଞା ।

ଆଦିତ୍ୟ—ସେ ବହୁତ ପଛ କଥା । ମିଟିଂ ସରିଲାପରେ ସେ ଏଠି, ମାନେ ମୋର ଏଇ ବଂଗ୍ଲୋରେ ଗେଷ୍ଟ ହେବେ । ଆଉ ଡିନରଟା ବି ତାଙ୍କର ଏଇଠି । ସେଥିପାଇଁ ଆରେଞ୍ଜମେଣ୍ଟ ସବୁ ସରିଛି । ଏଠାକାର ପୋଲିସ୍ ଅଫିସର, ବି.ଡ଼ି.ଓ ଆଉ ଅନ୍ୟାନ୍ୟ ମାନ୍ୟଗଣ୍ୟମାନେ ମଧ୍ୟ ଏଥିପାଇଁ ନିମନ୍ତ୍ରିତ । ତୁମେ ବି ଠିକ୍ ସମୟରେ ଆସିବ ଲୋଚନ ବାବୁ ।

ଲୋଚନ — ନିଶ୍ଚୟ ଆଜ୍ଞା, କି କଥା କହୁଛନ୍ତି ?

ଆଦିତ୍ୟ—ମୁଁ ଆଉ ଗୋଟେ ବିଷୟରେ ତୁମର ସାହାଯ୍ୟ ଚାହୁଁଛି···ତୁମେ ଜାଣିଥିବ କି ନାହିଁ ! ସାଧୁବାବୁ ଯଦିଓ ଆମ ପାର୍ଟିର ଲୋକ, ସେ ଜଣେ ବୈଷ୍ଣବ ମତାବଲମ୍ବୀ ମାନେ···ମାନେ···

ଲୋଚନ—ଓ ··(ହେସି ପକେଇ) ବୁଝିଗଲି···ବୁଝିଗଲି ଖାଣ୍ଟି ଗୌଡ଼ୀୟ ଆଜ୍ଞା··· ହେଃ ··ହେଃ·· ହେଃ

ଆଦିତ୍ୟ—ତେଣୁ ଡ଼ିନର ପରେ···

ଲୋଚନ—ଜଣେ ସାଧନା ସର୍ଜ୍ଜିମର ଏକାନ୍ତ ପ୍ରୟୋଜନ···ହେଃ···ହେଃ···ହେଃ ·· ଲୋଚନ ମିଶ୍ର ଥାଉ ଥାଉ ସାଧନା ସର୍ଜ୍ଜିମର କଣ ଅଭାବ ହେବ ?

ଆଦିତ୍ୟ - ସେ ସବୁରେ ତୁମର ପାରଦର୍ଶିତା କଥା ମୁଁ ଜାଣେ ଲୋଚନ ବାବୁ । ସହର ଛାଡ଼ି ମୁଁ ଯେତେବେଳେ କିଛି ଦିନ ଲାଗି ଏଇଠିଁକି ଆସେ ସେ ସବୁ ଦିନ ଗୁଡ଼ାକ ରଙ୍ଗୀନ କରିବା ଦିଗରେ ତୁମର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ···ମୁଁ କଣ କମା ଅସ୍ୱୀକାର କରି ପାରିବ ? ତେବେ ଏଥର ଟା ଯେମିତି···ସାଧୁବାବୁ ଅଛନ୍ତି ତ···

ଲୋଚନ— ଜମିବ ଆଜ୍ଞା ଜମିବ ।

ଆଦିତ୍ୟ -- ଟଙ୍କା କଥା କମା ଭାବିବେନି । ଆଉ ଯଦି ସେ ଶିକ୍ଷିତା ହୋଇଥାଏ ତା ଗୃହକଣ୍ଡ ବାକଣ୍ଡ ବନ୍ଦୋବସ୍ତ ମୁଁ କରିବ । ମୋର କାରଖାନାରେ ହେଉ କିମ୍ବା ସରକାରୀ କଳରେ ହେଉ ।

ଲୋଚନ—ମୁଁ ଆଜ୍ଞା ଶିକାରୀ ଲୋକ । କେତେ ସେଇମିତି ଶିକାର ଆଣି ଆପଣଙ୍କ ପାଖରେ ପହଞ୍ଚେଇଛି ନା ··ହେଃ···ହେଃ ··

(ପ୍ରବେଶ କରିଛନ୍ତି କାରଖାନାର ମ୍ୟାନେଜର)

ମ୍ୟାନେଜର—(ଆଦିତ୍ୟ ପ୍ରତାପକୁ) ନମସ୍କାର ସାର୍ ମତେ ଡ଼ାକି ଥିଲେ ସାର୍ ।

ଆଦିତ୍ୟ -- (ସୋଫା ଦେଖାଇ) ବସନ୍ତୁ । କାରଖାନା ସଂକ୍ରାନ୍ତରେ ମୋର କେତେଟା ଗୁରୁତ୍ୱପୂର୍ଣ୍ଣ ଆଲୋଚନା ଆପଣଙ୍କ ସହ ଅଛି । ଆମକୁ ତ ପୁଣି ସାଧୁବାବୁଙ୍କୁ ସେ ସବୁ ବିଷୟରେ ବୁଝେଇବାକୁ ପଡ଼ିବ ।

ମାନେଜର୍— ସାର୍, ସେ ଠିକ୍ ଟାଇମରେ ପହଞ୍ଚିବେ ତ ?

ଆଦିତ୍ୟ—ସେଥିରେ କମା ଭୁଲ୍ ନାହିଁ । ସାଧୁବାବୁଙ୍କ ସମୟରେ ଏପଟ ସେପଟ ନଥାଏ । ତା ଛଡ଼ା ସାଧୁଚରଣ ତ ଏକା ଆସିବେନି ସରକାରୀ ଦପ୍ତରର ବଡ ବଡ଼ ଅଫିସର ମାନେ ବି ଆସିବେ ।

ମାନେଜର୍‌ ସେହି ଅନୁଯାୟୀ ମୁଁ ସବୁ ବ୍ୟବସ୍ଥା ସାରି ଦେଇଛି ସାର୍‌ । ଆପଣ ଓ ମୁଁ ତାଙ୍କୁ ରିସିଭ୍‌ କଲାପରେ ସେ ସିଧା ପ୍ଲାଣ୍ଟକୁ ଆସିବେ । ସେଠି ସଭାରେ ସେ ଉଦ୍‌ବୋଧନ ଦେବେ । ପ୍ଲାଣ୍ଟ ସ୍କୁଲ୍‌ ତରଫରୁ ବିଚିତ୍ରା କାର୍ଯ୍ୟକ୍ରମ କୋରସ୍‌ ଏ ସବୁ ଏକଦମ୍‌ ରେଡ଼ି ସାର୍‌ ।

ଆଦିତ୍ୟ – ହଁ ସେଠୁ ସେ ମୋଟେ ପାଞ୍ଚ ମିନିଟ୍‌ ପାଇଁ ଯିବେ ସେ ଶ୍ରମିକ ବସ୍ତିକୁ । ସେଠାରେ ଗୋଟେ ଡ଼ାକ୍ତରଖାନା ଉଦ୍‌ଘାଟନ କରିବାର ଅଛି । ତା ପରେ ସିଧା ଏଇଠି,– ମୋ ବଙ୍ଗଲାକୁ. ଏଇଠି ତାଙ୍କର ଡ଼ିନର୍‌ ।

ମାନେଜର—ଏ ପ୍ରୋଗ୍ରାମର ଗୋଟେ କପି ଆମେ ତାଙ୍କ ନିକଟକୁ ପଠାଇ ଦେଇଛୁ ସାର୍‌ ।

ଆଦିତ୍ୟ—ଆଚ୍ଛା । ମୁଁ କିନ୍ତୁ ଅନ୍ୟ କଥା ଚିନ୍ତା କରୁଥିଲି (ଲୋଚନ ମିଶ୍ରକୁ) ଆଚ୍ଛା ଆପଣ ଯାଆନ୍ତୁ । ମୋ କଥା ମନେ ରଖିଥିବେ ଯେମିତ ।

ଲୋଚନ—ହଉ ଆଜ୍ଞା ସେଥିରେ କମା ଭୁଲ୍‌ ହବନି ଆଜ୍ଞା । ଖାସ ଗୃହ ଗୃହିଣୀ କ୍ୟାଣ୍ଡିଡ଼େଟ୍‌କୁ ହରେଇ ସରପଞ୍ଚ ଗଡସନ ହେଇଚନ୍ତି ··ମୁଁ ଲୋଚନ ମିଶ୍ର ·· କଲାକୁ ଧଳା କରିବା ଲୋକ··ହେଃ ହେଃ · ହେଃ ··(ସେ ଚାଲିଗଲେ)

ଆଦିତ୍ୟ – (ମ୍ୟାନେଜରଙ୍କୁ) ଷ୍ଟ୍ରାଇକ୍‌ ବୋଧେ ଗୋଟେ ମାସରୁ ଊର୍ଦ୍ଧ୍ୱ ହେବ । ନୁହେଁ କି ?

ମ୍ୟାନେଜର – ହଁ ସାର ।

ଆଦିତ୍ୟ—ଆଶ୍ଚର୍ଯ୍ୟ । ଆପଣ ଏତେ ଦିନର ପୁରୁଣା ଅଭିଜ୍ଞ କର୍ମଚାରୀ, ମୁଁ ଭାବିଥିଲି ଆପଣ ସିଚୁଏସନଟାକୁ ସମ୍ଭାଳି ନେବେ । କିନ୍ତୁ ବାଧ୍ୟ ହୋଇ ମତେ ଆଉ କେତେଟି ପ୍ରୋଗ୍ରାମ କ୍ୟାନସଲ କରି ଏଠିକି ଆସିବାକୁ ପଡ଼ିଲି ।

ମ୍ୟାନେଜର—ଅବସ୍ଥା ଏତେ ସଙ୍ଗୀନ୍‌ ହୋଇ ନଥାନ୍ତା ସାର୍‌ । ଲେବର୍‌ରମାନଙ୍କୁ କୋର୍ଟ କଚେରି ସସ୍‌ପେଣ୍ଡ କରିଦେବାର ଭୟ ମୁଁ ପ୍ରଥମେ ଦେଖେଇ ଥିଲି ସେମାନେ କିଛିଟା ଦବି ଯାଇଥିଲେ । କିନ୍ତୁ ଆନ୍ଦୋଳନ ଆହୁରି ତେଜି ଉଠିଲା ଯେତେବେଳେ କର୍ଣ୍ଣ ଦାସ ବୋଲି ଏକ ଶ୍ରମିକ ଏହାର ନେତୃତ୍ୱ ନେଲା ।

ଆଦିତ୍ୟ – ତା ହେଲେ ପୂର୍ବରୁ କଣ ?

ମ୍ୟାନେଜର—ପୂର୍ବର ଶ୍ରମିକ ନେତା ଜଗବନ୍ଧୁକୁ ମୁଁ ହାତ କରି ଦେଇଥିଲି ସାର୍‌ । ତା ଜରିଆରେ ଆନ୍ଦୋଳନ ଦବେଇ ଦେବା ପାଇଁ ମୁଁ ଚାହୁଁଥିଲି । କିନ୍ତୁ ସବୁ

ଓଲଟ ପାଲଟ ହୋଇଗଲା ସାର୍ । ଜଗବନ୍ଧୁ ଆମ ସଙ୍ଗେ କଂପ୍ରୋମାଇଜ୍ କରିବା ପାଇଁ ଶ୍ରମିକମାନଙ୍କୁ କହିଲା ବେଳେ ଆରମ୍ଭ ହେଲା କନ୍ଦଳର ସୂତ୍ରପାତ । ଜଗବନ୍ଧୁ ଓ ତାର ଚେଲାମାନେ ଥିଲେ ସଂଖ୍ୟାରେ ଖୁବ୍ ଅଳ୍ପ ସାର୍ ।

ଆଦିତ୍ୟ - ହାଃ...ହାଃ · ହାଃ · ତାପରେ ଆମର ରଣକୌଶଳ ସଂପର୍କରେ ମୁଁ ସେଦିନ ତ ତମକୁ ଟେଲିଫୋନ୍‌ରେ କହିଥିଲି ।

ମ୍ୟାନେଜର – (ଉତ୍ସାହିତ ହୋଇ) ମୁଁ ବି ଚେଷ୍ଟା କରିଥିଲି ସାର୍ ।

ଆଦିତ୍ୟ – ଜାଣେ, ସେ ଇନ୍‌ଫରମେସନ୍ ବି ମୁଁ ପାଇଛି ।

ମ୍ୟାନେଜର – ଜଗବନ୍ଧୁକୁ ଆମ ଲୋକ ଖୁବ୍ ହୁସିଆରରେ ଖତମ୍ କରିଛନ୍ତି ସାର୍ ଆଉ ଅଠା ବୋଲି ଦିଆଯାଇଛି କଣ୍ଣଦାସ ନାଁ ରେ । ତଥାପି ଶ୍ରମିକମାନେ ମାନିବାକୁ ରାଜିନୁହଁନ୍ତି କଣ୍ଣ ଦାସ ଖୁନୀ ଅପରାଧୀ । ପୋଲିସ୍ ଇନସ୍‌ପେକ୍ଟର ସେଦିନ ମୋ ଠାରୁ ଇନ୍‌ଫରମେସନ୍ ପାଇ କଣ୍ଣ ଦାସକୁ ଆରେଷ୍ଟ କରି ନେଇଥିଲେ । ଅନ୍ୟ ଶ୍ରମିକମାନେ ସେତେବେଳେ ପ୍ରତିରୋଧ କରିଥିଲେ । ତା ସ୍ତ୍ରୀ ମାଳତୀ ମଧ୍ୟ ଖୁବ୍ ପ୍ରତିବାଦ କରିଥିଲା ।

[ଦ୍ୱିତୀୟ ଜୋନ୍‌ରେ ଆଲୋକ ଲିଭିଗଲା । ଆଦିତ୍ୟ ପ୍ରତାପ ଓ ମ୍ୟାନେଜର ନିଶ୍ଚଳ ହୋଇଗଲେ ପ୍ରଥମ ଜୋନ୍‌ରେ । ଏଣିକି ଦ୍ୱିତୀୟ ଜୋନ୍ କଣ୍ଣଦାସର ଘର ରୂପେ ବ୍ୟବହୃତ ହେବ । ଦେଖାଗଲା ଛିଡ଼ାହୋଇଛନ୍ତି କଣ୍ଣଦାସ କାରଖାନାର ଜଣେ କର୍ମଚାରୀ ଓ ପୋଲିସ୍ ଇନ୍‌ସ୍‌ପେକ୍ଟର କନେଷ୍ଟବଳ । କଣ୍ଣଦାସ ଉତ୍ତ୍ୟକ୍ତ ହୋଇ କହୁଥାନ୍ତି ।]

କଣ୍ଣ – ଆପଣମାନେ ମିଛ କହୁଚନ୍ତି । ଜଗବନ୍ଧୁ ସହିତ ମୋର ଆଦର୍ଶଗତ ବିରୋଧ ଥାଇପାରେ । ମାତ୍ର ଆପଣମାନେ କମିତି ଭାବି ପାରିଲେ ଯେ ମୁଁ ତାକୁ ··

ଇନ୍‌ସ୍‌ପେକ୍ଟର – ଦେଖ ତୁମ ବିରୁଦ୍ଧରେ ଅନେକ ପ୍ରମାଣ ମିଳିଛି । ତୁମେ ଗୁଡ଼େ ଅଯଥା ବକ୍‌ବାକ୍ କରନା ।

ଜମ୍ବୀ – (ଖୁବ୍ ମଦ ପିଇ ଦେଇଥାଏ) ଶାଳାକୁ ନେଇଯାଅ ମାମୁଁ ଘରକୁ ·· ହାରାମୀ···ଖୁନୀ···ମୁଁ ଦେଖିଛି···ଶାଳା ଜଗା ବେକରେ ଛୁରି ଭୁଷି ଦେଲା ଛୁରିଟା ।

କଣ୍ଣ—(ଉତକ୍ଷିପ୍ତ ହୋଇ) ଜମ୍ବୀବାବୁ । ସଞ୍ଜତ ହୋଇ କଥା ଭାଷା କରନ୍ତୁ ଆପଣ । ମାଲିକ ଆଦିତ୍ୟ ପ୍ରତାପ ଓ ମ୍ୟାନେଜର ବାବୁଙ୍କଠାରୁ କେତେଟଙ୍କା ନେଇଛନ୍ତି

ଏ ମିଛ ସାକ୍ଷୀ ଦେବାକୁ । ଅଦ୍‌ଭୁତ (ବୃଦ୍ଧିଙ୍କୁ) ଆପଣ ମାନେ କ'ଣ ଭାବନ୍ତି ଦୁନିଆରେ ନ୍ୟାୟ ଧର୍ମ କିଛି ହେଲେ ନାହିଁ ।

ଜମ୍ବୀ — ଆବେ · · ଧର୍ମ ଅଛି ବେ ଜରୁର ଅଛି । ନ ହେଲେ ତୋ ଭଳି ପହିଲା ନମ୍ବର ଖୁ,ନୀ ଧରାପଡନ୍ତା ।

କଣ୍ଠ — (ଇନ୍‌ସ୍‌ପେକ୍ଟରଙ୍କୁ) ବିଶ୍ୱାସ କରନ୍ତୁ, ମୁଁ ଜଗବନ୍ଧୁର ଖୁନ୍ ବିଷୟରେ କିଛି ହେଲେ ବି ଜାଣିନି ।

ଇନ୍‌ସ୍‌ପେକ୍ଟର — ସେ ମିଛ ସତର ହିସାବ ତୁମେ କୋର୍ଟରେ ଦେବ । ଆଇନ୍ ଅନୁଯାୟୀ ତୁମକୁ ଗିରଫ କରିବା ମୋର ଦାୟିତ୍ୱ ।

ଜମ୍ବୀ — ଲେକଗୁଡ଼ାଙ୍କୁ ମଡେଇ ଏଠି ଗୋଟେ ଘ ଲା ଲଗେଇଥିଲ · · ଯା, ମାମୁଁ ଘରକୁ । ଘଣା ପେଲିଲେ ଠିକ୍ ଅକଲ ଆସିବ ।

କଣ୍ଠ — ଜମ୍ବୀବାବୁ ! ଆପଣ କାରଖାନାର ମାଲିକ ଏବଂ ତାଙ୍କର ଯେଉଁମାନେ ଗୋଲାମ ତାଙ୍କର ବଡସ୍କର । ମୁଁ ଜାଣିଛି କାହିଁକି ଆପଣ ମିଛ ସାକ୍ଷୀ ମୋ ବିରୁଦ୍ଧରେ ଦେଉଛନ୍ତି ଏବଂ କାହିଁକି ଇନ୍‌ସ୍‌ପେକ୍ଟର ବାବୁ ମତେ ଗିରଫ୍ କରିବା ପାଇଁ ଧାଇଁ ଆସିଛନ୍ତି ? ହେଲେ ଶ୍ରମିକ ସଂଗଠନକୁ ଏଇମିତି ହୀନ ଉପାୟରେ ଦୁର୍ବଳ କରି ପାରିବେନି ଆପଣମାନେ । ତାହା ଆହୁରି ସଙ୍ଗଠିତ ହବ ଦୃଢ଼ ହବ ।

ଜମ୍ବୀ — ମାର୍ ଗୁଲି ତୋ ସଙ୍ଗଠନକୁ · · ଜଗବନ୍ଧୁଟା ମରିଗଲ · · ଆଃ · · · ଚୁ ଚୁ କେଡ଼େ ଭଲ ଲୋକଟା ଥିଲା । ଜଗବନ୍ଧୁ · · · ହେ ପ୍ରିୟ ବନ୍ଧୁ ମୋର ତୁମେ ଏବେ କେଉଁଠି ଜଗବନ୍ଧୁ (ମଦ ନିଶାରେ ସେ କାନ୍ଦିବାକୁ ଲାଗିଲା ।)

ଇନ୍‌ସ୍‌ପେକ୍ଟର—ଓଃ ଆପଣ ଚୁପ୍ କରନ୍ତୁ ।

କଣ୍ଠ — ଶ୍ରମିକମାନେ ମଣିଷ ଇନ୍‌ସ୍‌ପେକ୍ଟର ବାବୁ । କାରଖାନା କର୍ମକର୍ତ୍ତାମାନଙ୍କ ଜୁଲମ୍ ବିରୁଦ୍ଧରେ ପ୍ରତିବାଦ କରି ସାଧାରଣ ସୁବିଧ ସୁଯୋଗ ଦାବୀ କରି ଯଦି ସେମାନେ ଧର୍ମଘଟ କରନ୍ତି ତା ହୁଏତ ଆପଣଙ୍କ ଆଗରେ ଅନ୍ୟାୟ ହୋଇପାରେ କିନ୍ତୁ ଯେଉଁମାନେ ଦିନ-ଦିପହରରେ ଗରିବମାନଙ୍କୁ ଶୋଷଣ କରି ଚାଲିଛନ୍ତି । ଅନ୍ୟର ଅର୍ଥ ଅପହରଣ କରି ଅର୍ଥର ଗଦା ତିଆରି କରି ଚାଲି ଚାଲିଛନ୍ତି – ସେମାନଙ୍କ ପାଇଁ ସାତଖୁଣ୍ ମାଫ · · · ନୁହେଁ ?

(ଭିତରୁ ପ୍ରବେଶ କଲି ମାଳତୀ । ସେ ସୁନ୍ଦରୀ କିନ୍ତୁ କୌଣସି ଦୁର୍ଘଟଣାରେ ସେ ତାର ଆଖି ଦୁଇଟି ହରେଇଛି )

ମାଳତୀ – (ଅଣ୍ଡାଳି ଅଣ୍ଡାଳି) କ'ଣ ହେଉଛି ଏତେ ଲୋକଙ୍କର ପାଟି ତୁଣ୍ଡ କାହିଁକି ? (କିଛି ସମସ୍ତ ନୀରବତା ପରେ ପୁଣି ସେ କହୁଛି) କେହି କିଛି କହୁ ନାହାନ୍ତି ଯେ ସମସ୍ତେ ନୀରବ କାହିଁକି ?

କଣ୍ଠ - (ଇନ୍‌ସ୍‌ପେକ୍ଟରଙ୍କୁ) ଦେଖୁଛନ୍ତି ଇନ୍‌ସ୍‌ପେକ୍ଟର ବାବୁ । ଇଏ ହେଉଛି ମୋର ଅର୍ଦ୍ଧାଙ୍ଗିଣୀ ସ୍ତ୍ରୀ । ଆଜକୁ ପାଞ୍ଚ ଛ' ମାସ ତଳେ···ଆପଣଙ୍କର ମନେ ଥିବ କି ନାହିଁ ଗତ ଅଧରେ କେଇଜଣ ଗୁଣ୍ଡା ଲଗାଇ ମୋ କବାଟ ଝରକା ଭାଙ୍ଗି ମୋ ଘରକୁ ଏସିଡ୍ ବୋତଲ ଫିଙ୍ଗା ଯାଇଥିଲା । ସୌଭାଗ୍ୟକୁ ମୁଁ ବର୍ତ୍ତିଯାଇଥିଲି । ହେଲେ ମାଳତୀ ଚିରଦିନ ଲାଗି ଅନ୍ଧ ହୋଇଗଲା । ଇନସ୍‌ପେକ୍ଟର ବାବୁ (ତା କଣ୍ଠ ବାଷ୍ପରୁଦ୍ଧ ହୋଇ ଆସୁଥିଲା ଓ ତା ଚକ୍ଷୁରେ ଅଶ୍ରୁ) ମୁଁ କେସ ଥାନାରେ ଏତଲା ଦେଇ ନଥିଲି । ଆପଣଙ୍କୁ ଯାଇ ଗୁହାରି କରି ନଥିଲି । କିନ୍ତୁ ହେଲା କ'ଣ ?

ଇନ୍‌ସ୍‌ପେକ୍ଟର – ଦେଖନ୍ତୁ - ଆସାମୀକୁ ଧରିବା ପାଇଁ ଆମର ସବୁ ଚେଷ୍ଟା ବ୍ୟର୍ଥ ହୋଇଥିଲା ।

କଣ୍ଠ – ସେଇଟା ତ ଜଣାଶୁଣା କଥା ଇନ୍‌ସ୍‌ପେକ୍ଟର ବାବୁ । ହେଲେ ଆମପରି ନିର୍ଦ୍ଦୋଷମାନଙ୍କୁ ଧରିନେବା ପାଇଁ --

ଇନ୍‌ସ୍‌ପେକ୍ଟର – (ତାକୁ କହିବାକୁ ନଦେଇ) ଆପଣ ଚୁପ୍ କରନ୍ତୁ । କହିବା ତ ଯାହା କହିବା କଥା ଆପଣ କୋର୍ଟରେ କହିବେ ।(କନେଷ୍ଟବଳକୁ) ହାଁ ହାତ କଡ଼ି ଲଗାଅ । କନେଷ୍ଟବଳ ହାତକଡ଼ି ଲଗାଇ ଦେଲା ।)

ମାଳତୀ – ତୁମର କଣ ହୋଇଛି ? କାହିଁକି ସେମାନେ ତୁମକୁ ଗିରଫ କରି ନେବେ । ଆମେ କାହାର କଣ କରିଛେ ?

କଣ୍ଠ — ମାଳତୀ ! ମୁଁ ଅପରାଧୀ । ମୁଁ କୁଆଡ଼େ ଜଗବନ୍ଧୁକୁ ଖୁନ୍ କରିଛି ?

ମାଳତୀ – ଏଁ···ତୁମେ · ନା ନା···ନା·· ଇନସ୍‌ପେକ୍ଟର ବାବୁ ଏହା ଜମା ହୋଇ ପାରେ ନା ।

ଜସ୍ମୀ – (ତା ଆଡ଼କୁ ମାଡ଼ିଯାଇ) ମାଳତୀ ! ମାଇଁ ଡ଼ାର୍ଲିଂ ··କଣ୍ଠ ଯାଉ ଶାଳା ହାରାମ୍‌ଯାଦା···ମୁଁ ତ ଅଛି···ମୁଁ ···ତୁ ଜମା ଜାଣିନୁ ମାଳ ତତେ ଦେଖିଲା ପରଠୁ ମୁଁ କେମିତି ଖାଲି ସନ୍ତୁଳି ହୋଇ ମରୁଚି·· ମୁଁ ତତେ କଥା ଦେଉଚି ତତେ ସୁନା ହେପାଜତରେ ରଖିବି ।

କଣ୍ଠ —(ଉତ୍ତେଜିତ କଣ୍ଠରେ) ଆପଣ ସୀମା ଲଂଘି ଯାଉଛନ୍ତି ଜସ୍ମୀବାବୁ ।

ମାଳତୀ – (କ୍ରୋଧ ଏବଂ ଅଶ୍ରୁପୂର୍ଣ୍ଣ କଣ୍ଠରେ) ଗରିବ ତ ସମସ୍ତଙ୍କର ଅଣ୍ଟା ପରିହାସର ପାତ୍ର ଜସ୍ମୀବାବୁ । ଆମର କେହି ନାହିଁ ପଦେ ହେଲେ କହିବାକୁ ।

ଇନ୍‌ସ୍‌ପେକ୍ଟର—ଆସାମୀକୁ ନେଇ ଆସ କନେଷ୍ଟବଲ । ଅଯଥା ସମୟ ନଷ୍ଟ ହେଉଛି । (ସେ ଚାଲିଗଲେ)

କଣ୍ଠ—(କନେଷ୍ଟବଲ ତାକୁ ନେଇ ଯାଉଥିଲା ବେଳେ) ଯାଉଛି ମାଳତୀ । ଜାଣେ ନା ଆଇନ୍‌ର ମିଥ୍ୟା ଜାଲରୁ କେବେ ଖଲାସ ହେବ । ହେଲେ···(କରୁଣ କଣ୍ଠରେ) ତମର ଏ ଅନ୍ଧ ଆଖିଦିଟା ନେଇ ତମେ ଚଳିବ କେମିତି ?

ମାଲତୀ ନାଁ ନାଁ ମୁ ବି···ମୁ ବି ତମ ସାଙ୍ଗରେ ଯିବି । ମତେ ବି ଆରେଷ୍ଟ କରି ନଅନ୍ତୁ ଇନ୍‌ସ୍‌ପେକ୍ଟର ବାବୁ । (କଣ୍ଠକୁ ହାତ କଡ଼ା ଦେଇ ଇନ୍‌ସ୍‌ପେକ୍ଟର ଏବଂ କନେଷ୍ଟ ବଲ ଚାଲିଯିବା ସଙ୍ଗେ ସଙ୍ଗେ ପ୍ରଥମ କୋନ୍ ଅନ୍ଧକାରରେ ବୁଡ଼ିଗଲା, ଦ୍ୱିତୀୟ କୋନ୍‌ରେ ବସିଥିଲେ ଆଦିତ୍ୟ ପ୍ରତାପ ଓ ମ୍ୟାନେଜର)

ଆଦିତ୍ୟ—ଆଚ୍ଛା, କଣ୍ଠ ଦାସ ଜେଲ୍‌ରେ ଥାଇ ଯେଉଁ ବିବୃତି ଦେଇଛି ତାକୁ ପଢ଼ିଛନ୍ତି ଆପଣ ? ଆଜି କାଗଜରେ ବାହାରିଚି ।

ମ୍ୟାନେଜର—ସେଥିରେ ଆମ ବିରୁଦ୍ଧରେ ଗୁଡ଼ାଏ ଲେଖିଛି ।

ଆଦିତ୍ୟ—ଖାଲି ଏମିତି ଲେଖିଛି ବୋଲି କହି କଥାଟାକୁ ଉଡ଼େଇ ଦେଲେ ଚଳିବନି ମ୍ୟାନେଜର ବାବୁ । କଣ୍ଠଦାସକୁ ଉଚିତ ଶିକ୍ଷା ଦବାକୁ ପଡ଼ିବ । ଆନ୍ଦୋଳନକାରୀ ଶ୍ରମିକ ମାନଙ୍କୁ ଦେଖେଇ ଦେବାକୁ ପଡ଼ିବ । ଆଦିତ୍ୟ ପ୍ରତାପ ମହେନ୍ଦ୍ର ବାହାଦୁର ଦେହରେ ରାଜରକ୍ତ ପ୍ରବାହିତ । କର୍ପୁର ଯାଇଛି ସିନା ହେଲେ କନା ଖଣ୍ଡିକ ତ ପଡ଼ିଛି । ଏ ଯୁଗରେ ଆଦିତ୍ୟ ପ୍ରତାପ ରଜା ନ ହୋଇ ପାରେ ହେଲେ ସେ ଶିଳ୍ପପତି । ଆଉ ଗଣର ନେତା ସାଧୁଚରଣ ହାଃ ହାଃ ସେତ ଅର୍ଥର ପୂଜା ଭକ୍ତ ।

ମ୍ୟାନେଜର—କିନ୍ତୁ ସାର୍, ସାଧୁବାବୁଙ୍କୁ ଯେମିତି ହେଲେ ଖୁସି କରେଇବାକୁ ପଡ଼ିବ ।

ଆଦିତ୍ୟ—ସେ ଦାୟିତ୍ୱ ତ ମୁଁ ପୂରା ଆପଣଙ୍କ ଉପରେ ଛାଡ଼ି ଦେଇଛି ତା ଛଡ଼ା ସେ ଆମ କମ୍ପାନୀର ବୋର୍ଡ ଅଫ୍ ଡାଇରେକ୍ଟରସ୍‌ରେ ଅଛନ୍ତି । ତାଙ୍କ ଜରିଆରେ ଆମେ ଉପର ଅଫିସରମାନଙ୍କୁ ଟ୍ରାପ୍ କରିପାରିବା । ଦରକାର ପଡ଼ିଲେ ମୁଁ ଏଠି ଫ୍ୟାକ୍‌ଟ୍ରି ବନ୍ଦ କରିଦେବି କିନ୍ତୁ ମୋ ବିରୁଦ୍ଧରେ ମୋର ଅନୁଗତମାନଙ୍କ ବିରୁଦ୍ଧରେ କେହି ସ୍ୱର ଉତ୍ତୋଳନ କଲେ ମୁଁ ତାର କଣ୍ଠ ରୁଦ୍ଧ କରିଦେବି ମ୍ୟାନେଜର ବାବୁ—ଦରକାର ପଡ଼ିଲେ ନିଜର ସମସ୍ତ ଶକ୍ତି ଖଟେଇ ।

ବାହାରେ ଶ୍ରମିକ ମାନଙ୍କ ମିଳିତ ସ୍ଲୋଗାନ ଶୁଣାଗଲା—ଇନ୍‌କଲାବ ଜିନ୍ଦାବାଦ—ଆମର ଦାବୀ ପୂରଣ ହେଉ, ଶ୍ରମିକ ୟୁନିୟନ ଜିନ୍ଦାବାଦ୍—ପ୍ରଭୃତି । ତା ପରେ ମିଳିତ କଣ୍ଠ ସଙ୍ଗୀତ ମଧ୍ୟ ଭାସି ଆସୁଥିଲା ଦୂରରୁ ।

ଜାଗରେ ଦଳିତ ପୀଡ଼ିତ ଜାତି
ସଙ୍ଘବଦ୍ଧ ଉଠରେ ମାତି
ଶୋଷଣ ପେଷଣ ଚୂର୍ଣ୍ଣ କର
ଅନ୍ୟାୟ କାରା ଭାଙ୍ଗିଦିଅ ।

ଆଦିତ୍ୟ ପ୍ରତାପ—(ଉତ୍ତେଜନାରେ ପଦଚାରଣ କରୁଥିଲେ ଏବଂ ତାଙ୍କର ଅନୁସରଣ କରୁଥିଲେ ମ୍ୟାନେଜର ବାବୁ) ଧର୍ମଘଟର ଶୋଭାଯାତ୍ରା ଓ ସ୍ଲୋଗାନ । (ସେ ଉତ୍ତ୍ୟକ୍ତ ହୋଇ ପଡ଼ିଥିଲେ) ଆଶ୍ଚର୍ଯ୍ୟ । ଏଠିକାର ପୋଲିସ୍ ଆଡ଼ମିନିଷ୍ଟ୍ରେସନ ଏସବୁ · ନା । ଏ ସଂପର୍କରେ ମତେ ଉପରକୁ ଲେଖିବାକୁ ପଡ଼ିବ ।

ମ୍ୟାନେଜର—ସାର୍, ଧର୍ମଘଟକାରୀମାନେ ଏଠାକୁ ଆସିବା ସଂପୂର୍ଣ୍ଣ ଅସମ୍ଭବ । ବାହାରେ କଡ଼ା ପୋଲିସ୍ ପହରା ଅଛି ଦରକାର ପଡ଼ିଲେ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଆମ ଗୁଣ୍ଡାମାନେ ଜଗି ରହିଛନ୍ତି ।

ଆଦିତ୍ୟ—ସେ କଥା ମୁଁ କହୁନି ମ୍ୟାନେଜର ବାବୁ ଏତେ ଆଇନ୍ କାନୁନ୍ କଟକଣା ସତ୍ତ୍ୱେ ପୋଲିସ୍‌ର ବ୍ୟାପକ ଗିରଫ୍ତାରି ସତ୍ତ୍ୱେ ସେମାନଙ୍କ ନେତା କଣ୍ଠଦାସ ଗିରଫ୍ ହେଲା ପରେ···ପୁଣି ଆନ୍ଦୋଳନ କିମିତି ଚାଲିଛି ।

ମ୍ୟାନେଜର—ଆଗରୁ ସେମାନଙ୍କ ଦାବୀ ଥିଲା ଛୁଟି, ବୋନସ୍, ପରିଚାଳନା ବୋର୍ଡ଼ରେ ଶ୍ରମିକ ପ୍ରତିନିଧିଙ୍କ ଅଂଶ ଗ୍ରହଣ ଏସବୁ--ଏବେ ତା ସହିତ ସେମାନେ ଯୋଡ଼ୁଛନ୍ତି ବିନା ସର୍ତ୍ତରେ କଣ୍ଠ ଦାସର ଖଲାସ ।

ଆଦିତ୍ୟ—ଅସମ୍ଭବ ! ଆଦିତ୍ୟ ପ୍ରତାପ ମହେନ୍ଦ୍ର ବାହାଦୁରର ବୁଦ୍ଧି ଏତେ କଞ୍ଚା ନୁହେଁ ମ୍ୟାନେଜର ବାବୁ ତା ହୋଇଥିଲେ ସେ କାରଖାନା ପରେ କାରଖାନା ପୁଞ୍ଜି ପରେ ପୁଞ୍ଜି ବଢ଼ାଇ ଚାଲି ନଥାନ୍ତା । ଆଜି ଯଦି ମୁଁ ଗୋଟେ ଦାବୀପୂରଣ କରେ ତା ପରଦିନ ସେମାନେ ଦାବୀର ଲମ୍ବା ଫର୍ଦ୍ଦ ଧରି ପହଞ୍ଚିବେ । (ଟିକିଏ ସମୟ ପରେ କ୍ରୁଦ୍ଧ ହୋଇ) ନାଁ । ଗୋଟେ ହେଲେ ବି ଦାବୀ ନୁହେଁ । ଆଇ ଉଇଲ ସ୍ମାସ ଦେମ୍ ଅଲ୍ । (I will smash them all) ହଁ ଆଉ ଗୋଟେ କଥା·· କଣ୍ଠଦାସକୁ ଯେପରି ଜାମିନରେ ଛାଡ଼ି ଦିଆ ନ ଯାଏ ସେ ସଂପର୍କରେ ପୋଲିସ ଇନସ୍‌ପେକ୍ଟରଙ୍କ ସହିତ ଆପଣ କଥା ଭାଷା କରନ୍ତୁ । ଆଉ ସେ ଜସ୍ମୀ ବୋଲି ଯେଉଁ ଲୋକଟା—ଆମ ଫ୍ୟାକ୍ଟ୍ରୀ କର୍ମଚାରୀ ତା ଛଡ଼ା

ଏଠିକାର ସ୍ଥାନୀୟ ବ· ଡ଼'ଓ ଏମାନଙ୍କୁ ମଧ୍ଯ ହାତରେ ରଖିଥାନ୍ତୁ । ଆଚ୍ଛା ଆପଣ ତା ହେଲେ ଆସନ୍ତୁ । ପରେ କେତେବେଳେ କଥା ହେବା ।

ମ୍ୟାନେଜର—ହଉ ସାର୍ ।

(ମ୍ୟାନେଜର ଚ୍ଲିଗଲେ, କିଛି ସମୟ ଚିନ୍ତିତ ହୋଇ ବସି ରହିଲେ ଓ ସିଗାରେଟ୍‌ରେ ନିଆଁ ଧରେଇଲେ ପରେ କଲିଂ ବେଲ୍ ଟିପିଲେ । ଆସିଲା ଦରଓ୍ୱାନ)

ଆଦିତ୍ୟ— (ଦରଓ୍ୱାନ୍‌କୁ) ଦେଖ କିଏ ଯଦି ମତେ ଏବେ ଭେଟିବାକୁ ଆସେ ତେବେ କହିବ ଅପେକ୍ଷା କରିବାକୁ । ହେଲା ?

ଦରଓ୍ୱାନ୍—ହଉ ଆଜ୍ଞା !

[ସେ ଚ୍ଲିଗଲା ଆଦିତ୍ୟ ପ୍ରତାପ ଚ୍ଲିବ ନେଇ ଡ୍ରୟାର ଖୋଲିଲେ ଏବଂ ସେଥିରୁ ବିଦେଶୀ ମଦ ବୋତଲଟି ବାହାର କରି ଗ୍ଲାସରେ ଅଳ୍ପ ଅଳ୍ପ କରି ଢ଼ାଳି ପିଇବାକୁ ଲାଗିଲେ । ଆଲୋକ ପରିବର୍ତ୍ତିତ ହେଲା । ସଙ୍ଗୀତର ମୃଦୁ ଆଳାପ ଚ୍ଲିଥାଏ କିଛି ସମୟ ପରେ ବାହାରେ ଗାଡ଼ି ରହିବାର ଶବ୍ଦ ହେଲା । ଆସୁଥିଲେ କାମିନୀ—ଆଦିତ୍ୟ ପ୍ରତାପଙ୍କ ସହଧର୍ମିଣୀ]

ବାହାରୁ ଦରଓ୍ୱାନ ଓ କାମିନୀଙ୍କର କଥା ଭାଷା ଶୁଣାଗଲା ।

ଦରଓ୍ୱାନ - ନମସ୍କାର ମାଡାମ । ସାର କହୁଥିଲେ କିଛି ସମୟ···

କାମିନୀ—ମାନେ ସେ ଅଛନ୍ତି ତ ?

ଦରଓ୍ୱାନ—ଅଛନ୍ତି ଯେ, ହେଲେ ··ମାନେ ବ୍ୟସ୍ତ ଅଛନ୍ତି ··

କାମିନୀ—ଓ ଆଚ୍ଛା (ସେ ସାମାନ୍ୟ ହସିଲେ ଓ ପରେ ସ୍କ୍ରିନ୍ ଆଡ଼େଇ ଭିତରକୁ ପଶି ଆସିଲେ । ଆଦିତ୍ୟ ପ୍ରତାପଙ୍କୁ ଏମିତି ଭାବରେ ଦେଖିବେ ବୋଲି ସେ କେବେ କଳ୍ପନା କରି ନ ଥିଲେ । ତେଣୁ ସ୍ତମ୍ଭୀଭୂତ ହୋଇଗଲେ । ନିଶାଟା ବି ଧରି ଆସୁଥାଏ କ୍ରମଶଃ ଆଦିତ୍ୟ ପ୍ରତାପଙ୍କୁ । ସେ ଦେଖିନେଲେ କାମିନୀଙ୍କୁ ଓ ଇତସ୍ତତଃ ହେଲେ ।)

କାମିନୀ-- ଓଃ ··ତମେ ତା ହେଲେ ଏଇ ବ୍ୟସ୍ତତା ଭିତରେ ଅଛ ।

ଆଦିତ୍ୟ—(ବୋତଲ ଟିପି ବନ୍ଦ କରି ଡ୍ରୟାରରେ ରଖି ଦେଇ) ତମେ ଏଠି । ହଠାତ୍ ?

କାମିନୀ— କେବେ କଲ୍ପନା କରି ନ ଥିଲ ନୁହେଁ ?

ଆଦିତ୍ୟ – (ବିରକ୍ତିରେ) କାହିଁକି ଆସିଛ ଏଠିକି ?

କାମିନୀ—ଏଠିକି ଆସିଲେ ତମର ସବୁ କଳଙ୍କ ଧରା ପଡ଼ିଯିବ । ସେଇଥି ପାଇଁ କ୍ଷୁବ୍‌ଧ ହେଉଛ ବୋଧହୁଏ ।

ଆଦିତ୍ୟ –(ପାଟି କରି) କାମିନୀ ।

କାମିନୀ—ଚିତ କାର କରିବା ଦରକାର କଣ ? ଖବର କାଗଜରୁ କିରଣପୁରର ଶ୍ରମିକ ଅଶାନ୍ତି ଦଙ୍ଗା, ମଡ଼'ର ଏ ସବୁ ଜାଣି ସାରିଲା ପରେ କୁହ କମିତ ସ୍ଥିର ରହି ପାରିଥାନ୍ତି ।

ଆଦିତ୍ୟ –ତମେ ଏବେ ଚାଲି ଯାଅ ମୁଁ ଠିକ୍ ଅଛି

କାମିନୀ—ନାଁ । ତୁମକୁ ମୋ ସଙ୍ଗରେ ଯିବାକୁ ପଡ଼ିବ ।

ଆଦିତ୍ୟ—ବାଜେକଥା କୁହନା, ଏମ୍ ଏଲ୍ ଏ· ସାଧୁବାବୁ ଏଠିକି ଆସୁଛନ୍ତି ଆଜି । ଫ୍ୟାକଟ୍ରିରେ ଫଙ୍କ୍‌ସନ୍ ତା ଛଡ଼ା ଫ୍ୟାକ୍‌ଟ୍ରି ସଂପର୍କରେ ଗୋଟେ ଗୁରୁତ୍ୱପୂର୍ଣ୍ଣ ଆଲୋଚନା ହେବ । ତା ଉପରେ ନିର୍ଭର କରୁଛି ହୁଏତ ଫ୍ୟାକ୍‌ଟ୍ରିରେ ତାଲା ପଡ଼ିବ କମ୍ବା ଚାଲିବ ।

କାମିନୀ—ବାଟରେ ଶ୍ରମିକ ମାନଙ୍କର ସେହି ଧାଡ଼ି ଧାଡ଼ି ଝୁମ୍ପୁଡ଼ି ଘର ଦେଖିଲି । ତମେ କଲ୍ପନା କରି ପାରିବନି ସେମାନେ କମିତ ଏକ ଅସ୍ୱାସ୍ଥ୍ୟକର ପରିବେଶରେ ବଞ୍ଚିଛନ୍ତି ।

ଆଦିତ୍ୟ –ଶିଳ୍ପପତି ଆଦିତ୍ୟ ପ୍ରତାପର ପତ୍ନୀ କାମିନୀର ଶ୍ରମିକମାନଙ୍କ ପ୍ରତି ଦରଦ ତ କିଛି କମ୍ ନୁହେଁ ?

କାମିନୀ—ବାଟରେ ଦଳ ଦଳ ଭୋକିଲା ମଣିଷ । ଶୁଣିଲି କାରଖାନା ଦୀର୍ଘଦିନ ବନ୍ଦ ହେବା ଫଳରେ ସେମାନଙ୍କର ଦୁଇ ଦନରେ ଥରେ ହେଲେ ବି ଚୁଲି ଜଳୁନି । (କଥାର ଗତି ବଦଳାଇ) କାହିଁକି ତମେ ଏଡ଼େ ନିଷ୍ଠୁର ହେଉଛ । ସୁହାଁ (ଥରେ ସେମାନଙ୍କୁ ଆଡ଼କୁ ।)

ଆଦିତ୍ୟ—କାମିନୀ । ତୁମର ଏଥିରେ ମୁଣ୍ଡ ଖେଳେଇବାର ଆବଶ୍ୟକତା କିଛି ନାହିଁ । ବହୁ ଶ୍ରମ କରି ଆସିଛ ଯେତେବେଳେ ବିଶ୍ରାମ ନିଅ ନଚେତ୍ ଫେରିଯାଅ ।

କାମିନୀ – (ଆବେଗର ସୁଅରେ କହି ଚାଲିଥାନ୍ତି] ଆହୁରି ବି ଶୁଣିଲି ତମର ଆଉ ତମ କର୍ମଚାରୀମାନଙ୍କର କାହାଣୀ । କଣ୍ଣଦାସର ଆରେଷ୍ଟ । ତାର ଅନ୍ଧୁଣୀ ସ୍ତ୍ରୀ

ମାଲତୀର ଦୁଃଖ ଦୁର୍ଦ୍ଦଶା ସବୁ ଶୁଣି ଆସିଚ । (ଅନୁଯୋଗ ଭରା କଣ୍ଠରେ) କୁହ, ଏସବୁ କାହିଁକି ? ଅର୍ଥର ପାହାଡ଼ ଗଦା ଉପରେ ବସି ତମେ ସବୁ ଭୁଲି ଯାଉଛ । କୁହ କ'ଣ ହେବ ସେ ଅର୍ଥ, ସେ ପ୍ରତିପତ୍ତି ? କିଏ ତମର ଅଛି ଯେ ତାକୁ ଉପଭୋଗ କରିବ ? ଏତେ ଘରଦ୍ୱାର କଳକାରଖାନା ଆଉ ଲାଭ କଣ ?

ଆଦିତ୍ୟ—ଓଃ ଷ୍ଟପ୍ ଇଟ୍ କାମିନୀ, ଏଠି ଆବେଗର ସ୍ଥାନ ନାହିଁ, ମୋର ସନ୍ତାନ ସନ୍ତତି ନାହିଁ ବୋଲି ଯେ ମୁଁ ମୋର ସବୁ ସଂପତ୍ତିକୁ ମୁକ୍ତ ହସ୍ତରେ ଦାନ କରିବ ଏ କଥା ଅସମ୍ଭବ । ଯେଉଁ କର୍ଣ୍ଣଦାସ କଥା ଶୁଣି ଆସିଛ ଆଉ ତାର ଅନ୍ତଃଶୀ ସ୍ତ୍ରୀ ମାଳତୀ କଥା ଶୁଣିଛ ତା ଠିକ କାମିନୀ । ଶିଳ୍ପପତି ଆଦିତ୍ୟ ପ୍ରତାପ ସଙ୍ଗେ ଟକ୍କର ଦେବାର ଯେଉଁ ଭୀଷଣ ପରିଣାମ ତାକୁ ଭୋଗୁଛି କର୍ଣ୍ଣ ଦାସ··· ହାଃ ହାଃ ହାଃ (ସେ ଶେଷ ଆଡ଼କୁ ଉନ୍ମାଦ ପରି ହସି ଉଠିଲେ)

କାମିନୀ—ଅରେ ହେଲେ ଭାବିଚ ତାର ସେ ଅନ୍ତଃଶୀ ସ୍ତ୍ରୀଟି କମିତି ଚଳୁଥିବ ? କି ଦୁଃଖରେ ଅନୁଶୋଚନାରେ ଭାଙ୍ଗି ପଡ଼ୁଥିବ ?

ଆଦିତ୍ୟ – କହୁଚ ତ ଅରେ ଆଡ଼ମିନ୍‌ଷ୍ଟ୍ରେସନରେ ଦୟା ଓ ଅନୁକମ୍ପାର ସ୍ଥାନ ନାହିଁ । ମୁଁ କର୍ଣ୍ଣଦାସକୁ ନଷ୍ଟ ଭ୍ରଷ୍ଟ କରଦେବାକୁ ଚାହେଁ ।

କାମିନୀ – ମୋ କଥା ରଖିବନି ତା ହେଲେ ।

ଆଦିତ୍ୟ – ନାଁ ।

କାମିନୀ—ସମ୍ପତ୍ତିର ପାହାଡ଼ ଉପରେ ଠିଆ ହୋଇ ତମେ ଦୁନିଆକୁ ଦେଖୁଚ ସେଇଥିପାଇଁ ତମ ହୃଦୟରୁ ମାନବିକତା ଟିକକ ଲୋପ ପାଇ ଯାଇଛି । ଅରେ ହେଲେ ସେଠୁ ଓହ୍ଲେଇ ଆସ ଆଉ ଅନ୍ୟମାନଙ୍କୁ ଦେଖ । ତୁମ ଚାରିପାଖ ବେଢ଼ି ରହିଥିବା ତୋଷାମଦିଆଙ୍କ ଠାରୁ ନିଜକୁ ଟିକେ ଦୂରେଇ ନିଅ ।

ଆଦିତ୍ୟ – ଓଃ । କାମିନୀ ତୁମେ ବନ୍ଦ କର, ବନ୍ଦକର ଏସବୁ ।

କାମିନୀ – ମୁଁ ଯାହା କହୁଚି ଠିକ କହୁଚି । ହୁଏତ ଆଜିର ଏ ଶ୍ରମିକ ଅସନ୍ତୋଷକୁ ପୋଲିସ ଲାଠି ଓ ଗୁଳିର ଆଶ୍ରୟ ନେଇ ତମେ ଦବେଇ ଦବ ମାତ୍ର ଏହା ଯେତେବେଳେ ଆହୁରି ଭୀଷଣ ହବ ତୀବ୍ର ହବ···

ଆଦିତ୍ୟ—[ଉପହାସ] ହାଃ · ହାଃ···ଏ ତୁମର ପ୍ରଳାପ କାମିନୀ ଏ ତୁମର ପ୍ରଳାପ ।

କାମିନୀ—ପ୍ରଳାପ ମୁଁ କରୁନି; କରୁଛ ତୁମେ । ପିଇବାଟା ମାତ୍ରାଧିକ ହୋଇଚି ତ ?

ଆଦିତ୍ୟ—କାମିନୀ । ଚାଲିଯାଅ ତମେ । ତୁମର କୌଣସି କଥା ଶୁଣିବା ପାଇଁ ମୁଁ ପ୍ରସ୍ତୁତ ନୁହେଁ । ମୋର ସମୟର ମୂଲ୍ୟ ଅଛି ।

କାମିନୀ—ଠିକ ଅଛି । ତମ ପରି ଜଣେ ମଦ୍ୟପ ଆଉ ନୀଚ ସ୍ୱାମୀ ଠାରୁ ମୋର କିଛି ଆଶା କରିବା ବୃଥା ।

ଆଦିତ୍ୟ—(ଜୋରରେ ଚାପୁଡାଟିଏ ଦେଇ) କାମିନୀ ।

କାମିନୀ—ଠିକ୍ ଅଛି । ମୁଁ ଚାଲି ଯାଉଛି । ହେଲେ ତୁମର ଅହଙ୍କାର ନେଇ ଏ ଯେଉ ପରିବର୍ତ୍ତନର ସୁଅ ଛୁଟି ଆସୁଛି ତାକୁ ତୁମେ ଜମା ଅଟକେଇ ପାରିବନି— ନାଁ ଜମା ଅଟକେଇ ପାରିବନି ।

ଆଦିତ୍ୟ—ହଁ ଚାଲିଯାଅ, ଏଇ ମୁହୂର୍ତ୍ତିରେ ଚାଲିଯାଅ । ଯାଅ—(ଚିତ୍କାର କରି ଉଠିଲେ ସେ)

କାମିନୀ—(ଚକ୍ଷୁରେ ଲୋତକର ପ୍ଳାବନ) ହଁ ଚାଲିଯିବାକୁ ପଡ଼ିବ । ଏଇ ମୁହୂର୍ତ୍ତିରେ କାରଣପୁର ମୁଁ ଛାଡି ଚାଲିଯିବି । ଭାବିଥିଲି·· ନାଁ।

(ସେ ଝଡ଼ପରି ଘରୁ ବାହାରିଗଲେ । ଟେଲିଫୋନରେ ରିଂ ହେଲା । ଫୋନ୍ ଧରିଲେ ଆଦିତ୍ୟ ପ୍ରତାପ)

ଆଦିତ୍ୟ—ହାଲୋ ···· କିଏ କହୁଛନ୍ତି ବି, ଡି: ଓ ·· ଆଚ୍ଛା ଆଚ୍ଛା ପହଞ୍ଚି ଗଲେଣି । ମିଟିଂ ସରିବାକୁ କେତେ ସମୟ ଲାଗିବ ସେଠି·· ବେଶି ଡେରି ହେବନି ତ ? ଡିନରଟା ତ ଏଇଠି । ହଁ ଶୁଣନ୍ତୁ ନାଇଟ୍ ହାଲଟ୍ କଥା କହୁଛନ୍ତି ତ । ଆପଣ ବଂଲୋ କାହିଁକି ରିଜର୍ଭ କଲେ । ଆମ ଫାକଟ୍ରି ଗେଷ୍ଟ ହାଉସତ ଅଛି । ସେଠି ସେ ଆରାମରେ ରହିଯାଇ ପାରିବେ କହୁଛନ୍ତି ? ନାଁ ନାଁ ପ୍ରୋବ୍ଲେମ୍ କଣ ହେବ ପୋଲିସ୍ ଫୋର୍ସ ସିକ୍ୟୁରିଟି ଗାର୍ଡ଼ ଏମାନେ ଥାଉ ଥାଉ । ତା ଛଡା ଆମେ ସେଠି ତ ତାଙ୍କର ରହିବାର ବନ୍ଦୋବସ୍ତ କରି ଦେଇଛୁ । ଆଚ୍ଛା ମୁଁ ରହିଲି—

( ସେ ରିସିଭର ଥୋଇଲେ ଏବଂ ଘରୁ ବାହାରି ଗଲେ । କିଛି ସମୟ ପରେ କଥାଭାଷା ହୋଇ ଭିତରକୁ ଆସିଲେ କାରଖାନାର ମ୍ୟାନେଜର ଓ ସରପଞ୍ଚ ।)

ମ୍ୟାନେଜର—ସାର କୁଆଡ଼େ ତରବରରେ ବାହାରିଗଲେ ।

ଲୋବନ—ବୋଧେ ମିଟିଂ ସିରଲା ପରେ ସାଧୁବାବୁଙ୍କୁ ଡ଼ାଇରେକ୍ଟ ଏଠିକି ନେଇ ଆସିବେ ।

ଲୋଚନ – ସେ କୁହେଁ ଆସିଲ ଯାଏ ଆମେ ଏଇଠି ବସିଥିବା ନାଁ କଣ କହୁଛନ୍ତି ?

ମ୍ୟାନେଜର—ନିଶ୍ଚୟ ! ସେଥିରେ ଭୁଲ୍ ଅଛି । ସାଧୁବାବୁ ପଦ୍ମଶ୍ରୀଲକ୍ଷଣି ମାନପତ୍ର ପ୍ରଦାନ । କାରଖାନାର ବିଭିନ୍ନ ସମସ୍ୟା ଉପସ୍ଥାପନ ଇତ୍ୟାଦି କାମ ଛାଡ଼ିଲେ ଏଆଡେ ଧାଉଁଛି ତାପରେ ଶ୍ରମିକ ବସ୍ତିରେ ଡାକ୍ତରଖାନା ଉଦ୍‌ଘାଟନ ଓ ବନ୍ଦନା କାର୍ଯ୍ୟକ୍ରମ ଚାଲିଥାଉ । ଏ ଆଡେ ତ ପୁଣି ଦେଖିବାକୁ ପଡ଼ିବ ଢ଼ିନର କଥା ।

ଲୋଚନ – ମୁଁ କିନ୍ତୁ ଆଉ ଗୋଟେ କଥା ଚିନ୍ତା କରୁଛି । ମୋ ପୁଅଟା ବି ଏ ପାଶ୍ କରି ଦବର୍ଷ ହେଲା ବେକାର । ସାଧୁବାବୁ ସୁପାରିଶ୍ କଲେ କୋଉଠି ଠାକି ଯାନ୍ତା । ସପ୍ଲାଇରେ ଦରଖାସ୍ତ କରିଛି ।

ମ୍ୟାନେଜର – ଆପଣ ତାକୁ ଆମ କାରଖାନାକୁ ଗୁଡନ୍ତୁ । ମୁଁ ମୋ ପକ୍ଷରୁ ଜବାବ ଦେଇଛି ଚାକିରି ନିଶ୍ଚିତ ।

ଲୋଚନ—ଟିକିଏ ଦୟା ରଖିଥିବେ ଆଜ୍ଞା କୋଉଠି ହେଲେ ଲାଗିଯାଉ । ବାବୁଙ୍କୁ ବିତ କହୁଥିଲି । ସପ୍ଲାଇରେ ହଉ କି କାରଖାନାରେ ହେଉ କୋଉଠି ଲାଗିଗଲେ ମୁଁ ନିଶ୍ଚିନ୍ତ ।

ମ୍ୟାନେଜର- - ଆମ ସାରଙ୍କ୍ ଆପଣଙ୍କ ଉପରେ ଖୁବ୍ ଖୁସି ।

ଲୋଚନ – ଦେଖାଯାଉ କ'ଣ ଠାକୁରଙ୍କ ଦୟା ?

ମ୍ୟାନେଜର—(ଫିସ୍‌ଫିସ୍ କଣ୍ଠରେ) ଆପଣ ଯେଉଁ ଅସଲ ଦାୟିତ୍ବରେ ଥିଲେ କଣ ହେଲା ସେଟା ?

ଲୋଚନ—ମୁଁ ଲୋଚନ ମିଶ୍ରଟି ଆଜ୍ଞା । ସେଥିରେ ଆଉ ଢ଼ିଲା ହବ ? ବନ୍ଧୁ ଆଡ଼େ ଫେଲ୍ ମାଇଲି କଣ ଆଉ କରାଯିବ ? ସଙ୍ଗୀନାଟିଏ ନ ହେଲେ କଣ ଭାବବେ ସାର୍ ଆମର ? ପୁଣି ସାଧୁବାବୁଟି, ବୁଝିଲେ ମ୍ୟାନେଜର ବାବୁ, ଗୋଟେ ଟେକାରେ ଦୁଇଟି ଚଢ଼େଇ ଶିକାର ··ହେଃ - ହେଃ ହେଃ···

ମ୍ୟାନେଜର—ଆପଣଙ୍କ ବୁଦ୍ଧିକୁ ତାରିଫ୍ ନକରି ରହି ପାରୁନି ।

ଲୋଚନ – କିହେ ! ଶ୍ରମିକ ବସ୍ତିରେ ସେମିତି ସଙ୍ଗୀନାଟିଏ ମିଳିବ କୋଉଠୁ ? ବି· ଡ଼ି: ଓ ବାବୁଙ୍କୁ ବି କହି କହି ନିରାଶ ହେଲି । ବ୍ଲକରେ ସେମିତି କେହି ମିଳିଲେନି । ବାଧ ହୋଇଗଲି କଣ୍ଟଦାସ ଘରକୁ ।

ମ୍ୟାନେଜର—ସେତ ଆରେଷ୍ଟ ହୋଇ ଜେଲ୍‌ରେ ଅଛି ।

ଲୋଚନ—ଆଃ ଶୁଣନ୍ତୁ ନା ? ସେ ସିନା ହାଜତରେ ଅଛି । ଘରେ ତ ମାଳତୀ ଅଛି ।

ମ୍ୟାନେଜର – ଓ  କଣ ସକ୍‌ସେସ୍‌ଫୁଲ୍‌ ହେଲେ ?

ଲୋଚନ – ମାଲତୀ ସୁନ୍ଦରୀ ମ୍ୟାନେଜର ବାବୁ । ଆଖିଦୃଷ୍ଟା ହରେଇଲେ କଣ ହେବ ?

ମ୍ୟାନେଜର – ତେବେ ?

ଲୋଚନ – ତେବେ ଆଉ କଣ ଆଜ୍ଞା । ଚଳିଯିବ ସେ । ହେଃ ··ହେଃ ··ହେଃ · ଯାଇ ତାଙ୍କୁ କହିଲି କଣୁଦାସ ଖବର ପଠେଇଛୁ ମୋ ହାତରେ । ସେ ତତେ ଦେଖିବାକୁ ଚାହୁଁଛୁ । ତାପରେ ତ ସେ ମୋ ସାଙ୍ଗରେ ଚାଲିଲା—କଣୁ ଦାସ ପାଖକୁ ନୁହେଁ ସିଧା ଗେଷ୍ଟ ହାଉସକୁ । ହେଃ ··ହେଃ···

ମ୍ୟାନେଜର— ଆପଣ ଖାସା ଲୋକ ।

ଲୋଚନ – ଇଏ ସାଧୁବାବୁଙ୍କ କଥାଟି — ଆଉ କାହା କଥା ହୋଇଥିଲେ ଦୋଷସବୁ ··

ମ୍ୟାନେଜର – ଆପଣଙ୍କୁ କେମିତି ଯେ ଧନ୍ୟବାଦ ଦେବ ।

ଲୋଚନ—କହୁଥିଲି ତ ଏକା ଢେଙ୍କାକେ ଦୁଇଟି ଚଢ଼େଇ · ହେଃ···ହେଃ · ହେଃ (ପହଞ୍ଚିଛନ୍ତି ବାରେଶ୍ୱର ବୈଶ୍ୱ ଗଞ୍ଜନ ମାନଧାତା । ସେ ଅଞ୍ଚଳର ଜଣେ ଜଣାଶୁଣା ଏବଂ ପ୍ରଭାବଶାଳୀ ଲୋକ ଓ ରାଜନୈତିକ କର୍ମୀ ।)।

ମାନଧାତା – (ସରପଞ୍ଚ ଓ ମାନେଜରଙ୍କୁ) ନମସ୍କାର ଆଜ୍ଞା ?

ଲୋଚନ—ନମସ୍କାର, ନମସ୍କାର-ଆରେ ମାନଧାତ । ବାବୁ ଯେ,(ମ୍ୟାନେଜର ବାବୁଙ୍କୁ) ଇଏ ହେଉଛନ୍ତି ବାରେଶ୍ୱର ବୈଶ୍ୱଗଞ୍ଜନ ମାନଧାତା ଆଜ୍ଞା । ସ୍ୱାଧୀନତା ସଂଗ୍ରାମୀ

ମାନଧାତା—ସିଆଡ଼େ ତ କଣ ମିଟିଂ ଫିଟିଂ ଚାଲିଛୁ । ସେଠିକଣ କିଛୁ କାମ ହୁଏ ? ଭାବିଲି ଏଇଠି ଏଇ ନରେ୍ଳାରେ ସାଧୁ ବାବୁଙ୍କ ସହ ଦୁଇପଦ କଥା ହେବ ? କଥା କଣ ଆଉ ? ମୋର ସେ ସ୍ୱାଧୀନତା ସଂଗ୍ରାମୀ ପେନ୍‌ସନ୍‌ କଥା । ଦେଖ ହୋ ଆମେ ପେନ୍‌ସନ୍‌ ପାଇଲୁ ·· ଦଳେ ବିରୋଧୀ ଲୋକ ଈର୍ଷ୍ୟା ରାଗରେ ଖାଲି ସନ୍ଥୁଳ ହୋଇମଲେ । ଦେଲେ ଉପରକୁ ଲେଖି ମୁଁ କୁଆଡେ ଭାଇ ସଙ୍ଗେ ଫୌଜଦାରୀ କରି ୧୯୪୬ ରେ ଜେଲ୍‌ଯାଇଥିଲି । ତେଣୁ ପେନ୍‌ସନ୍‌ ପାଇବ କାହିଁକି ? ବର୍ଷେ ହେଲା ପେନ୍‌ସନ୍‌ ବନ୍ଦ ।

ଲୋଚନ—(ମ୍ୟାନେଜରଙ୍କୁ) କଏ କଣ ନେଲା, କଏ କ'ଣ ଖାଇଗଲା ଏ ଖବର ଜାଣିବାକୁ ଲୋକମାନେ ଝାକ ବସିଛନ୍ତି ଆଜ୍ଞା । କଣ ଯେ କହିବ ଏମାନଙ୍କୁ ?

ମାନଧାତା -- ଅବଶ୍ୟ ମୁଁ ମାନୁଛି ଜମିଜମା ନେଇ ମୋ ଭାଇ ସହ ମୋର ଝଗଡ଼ା ହୋଇଥିଲା, କିନ୍ତୁ ··

ଲୋଚନ – କିଛି ପରବାୟ ନାହିଁ ମାନଧାତା ବାବୁ । ଏଗୁଡ଼ା ସବୁ ବିରୋଧୀ ଗୋଷ୍ଠୀର ଚକ୍ରାନ୍ତ । ସାଧୁବାବୁ ସୁପାରିଶ କରିଦେଲେ ସବୁ ଠିକ୍ ହୋଇଯିବ ।

ମାନଧାତା – ଇଏ ତ ଗଲା ପ୍ରଥମ କଥା, ଦ୍ୱିତୀୟ କଥା ହେଉଛି— ଆପଣ ଜାଣିଥିବେ ସରପଞ୍ଚ ବାବୁ ଧର୍ମ କର୍ମରେ ମୋର କେତେ ବିଶ୍ୱାସ ?

ଲୋଚନ – ତା ନୁହେଁ ଆଉ କଣ ? ଏଠି ହରିଗୁରୁ ବାବାଙ୍କ ମଠ ଠାରୁ ଆରମ୍ଭ କରି ସଂକୀର୍ତ୍ତନ ପର୍ଯ୍ୟନ୍ତ ସବୁ ତ ଆପଣଙ୍କ ପାଇଁ ।

ମାନଧାତା – ଏଠି ମୋ ଚେଷ୍ଟାରେ ମୁଁ କରୁଛି ଗୋଟିଏ ନିଖିଳ ଉତ୍କଳ ସାଧୁସନ୍ଥ ସମ୍ମିଳନୀ ହେଉ । ଓଡ଼ିଶାର ସବୁ ସାଧୁସନ୍ଥମାନଙ୍କୁ ମୁଁ ନିମନ୍ତ୍ରଣ ବି କରିସାରିଛି । ଏଥିରେ ସଭାପତିତ୍ୱ କରିବେ ବିଶିଷ୍ଟ ଭକ୍ତ ମହାରାଜ ଶ୍ୟାମାନନ୍ଦ ଓଁକାର ନାଥ ।

ଲୋଚନ—ମତେ ତ ତୁମେ ସେ କଥା ଥରେ କହିଥିଲ । ବାବାଜୀ ମାତାଜୀମାନେ ଏଠି ବହୁ ସଂଖ୍ୟାରେ ଯୋଗ ଦେଇ ପରସ୍ପର କୋଳାକୋଳି ହେବେ, ଭଜନ କୀର୍ତ୍ତନ କରିବେ । ବାବାମାନେ ଗୌଡ଼ୀୟ ଭାବରେ ଉଦ୍‌ବୁଦ୍ଧ ହୋଇ ତରୁଣୀ ମାତାମାନଙ୍କୁ ଡ଼ାକିବେ —'ଗୋ ରାଧିକେ' । ହେଃ ··ହେଃ···ହେଃ ···

ମ୍ୟାନେଜର – ମୁଁ ପ୍ରତିଶ୍ରୁତି ଦେଉଛି ଏଥିପାଇଁ ··ମୁଁ ଆପଣଙ୍କୁ ଅକୁଣ୍ଠ ସହଯୋଗ କରିବି । ମୋର ଏକାନ୍ତ ଇଚ୍ଛା ସାଧୁବାବୁ ଏ ସମ୍ମିଳନୀରେ ମୁଖ୍ୟ ଅତିଥି ଭାବରେ ଯୋଗ ଦିଅନ୍ତୁ ।

ଲୋଚନ —ସାଧୁବାବୁ ତ ନିଜେ ଜଣେ ଗୌଡ଼ୀୟ ମତାବଲମ୍ବୀ, ଏ ବ୍ୟାପାର ଶୁଣି ସେ ତ ଆନନ୍ଦରେ ନୃତ୍ୟ କରିବାକୁ ଲାଗିବେ ।

ମାନଧାତା—ଏ ସଂପର୍କରେ ମୁଁ ଆଦିତ୍ୟ ପ୍ରତାପଙ୍କ ସହ ଆଲୋଚନା କରିଥିଲି । ସେ ମଧ୍ୟ ଏ ଅଭ୍ୟର୍ଥନା କମିଟିର ଚେୟାରମ୍ୟାନ ଅଛନ୍ତି ।

ଲୋଚନ—କିଛି ଭାବନ୍ତୁନି । ଏ ସାଧୁସନ୍ଥ ସମ୍ମିଳନୀ ଏଠାରେ ମହା ସମାରୋହରେ ପାଳିତ ହେବ ।

ମ୍ୟାନେଜର – (ଘଣ୍ଟାକୁ ଚାହିଁ) ସମୟ ତ ହୋଇଗଲା । ଆଉ ମାତ୍ର କେଇ ମିନିଟ୍ ମଧ୍ୟରେ ସେ ଏଠି ପହଞ୍ଚିଯିବେ ।

ଲୋଚନ—(ଚନ୍ଦ୍ରାକର) ମୋର ମଧ୍ୟ କେତେଗୁଡ଼ାଏ କଥା ଥିଲା ତାଙ୍କୁ କହିବାକୁ। ମୋ ପଞ୍ଚାୟତର ମହିଳା ସମିତି କଥା କେଆର ଫିଡିଂ କଥା, ବୃକ୍ଷରୋପଣ, ରାସ୍ତା ମରାମତି ଏମିତି ଅନେକ।

ମ୍ୟାନେଜର—ସବୁ ଠିକ୍ ହୋଇଯିବ। ସାଧୁବାବୁ ଏଠି ପହଞ୍ଚି ତାଙ୍କର ଟେବୁଲକୁ ଗଲାପୂର୍ବରୁ ତାଙ୍କ କାନରେ ଖାଲି ପହଞ୍ଚାଇ ଦେବା କଥା।

ମାନଧାତା—ଦେଖାଯାଉ କଣ ହେଉଛି ?

(ଗାଡ଼ି ଆସିବାର ଶବ୍ଦ ଶୁଭିଲା। ହଠାତ୍ ସମସ୍ତେ ସଚେତନ ହୋଇଗଲେ।)

ମ୍ୟାନେଜର—ସେମାନେ ଆସିଲେ ବୋଧେ।

(ସେ ଦ୍ୱାରବନ୍ଧ ଆଡ଼କୁ ଧାଇଁଗଲେ)

ମାନଧାତା } (ବ୍ୟସ୍ତତା ପ୍ରକାଶ କରି) ଚାଲନ୍ତୁ ଶୀଘ୍ର।
ଲୋଚନ }

[ସେମାନେ ସମସ୍ତେ ବାହାରକୁ ଚାଲିଗଲେ। ଦ୍ୱିତୀୟ କୋନ୍ ରଙ୍ଗର ଅନ୍ଧକାରରେ ବୁଡ଼ିଗଲା ଏବଂ ଆଲୋକିତ ହେଲା ପ୍ରଥମ କୋନ୍। ଦେଖାଗଲା ପୂର୍ବର ସେଇ ପ୍ରସ୍ତାବନା ଦୃଶ୍ୟର ଲୋକଟି। ସେ ଚୁପ୍ ଚାପ୍ ବସିଛି ଦୁଇ ଆଣ୍ଠୁ ସନ୍ଧିରେ ମୁଣ୍ଡ ଦେଇ। ତା ପରେ ସେ ମୁହଁ ଟେକିଛି ଉପରକୁ ଧୀରେ ଧୀରେ। ଆଲୋକ ପରିବର୍ତ୍ତିତ ହେବା ସଙ୍ଗେ ସଙ୍ଗେ ସେ ଅନୁଭବ କରୁଛି ତାକୁ ଯେମିତି କିଏ ପ୍ରହାର କରି ଚାଲିଛି ଓ ସେ ଯନ୍ତ୍ରଣାରେ ଛଟପଟ ହେଉଛି ଓ ଚିତ୍କାର କରୁଛି। ସେ ଏପଟ ସେପଟ ଗଡୁଛି ଯନ୍ତ୍ରଣାରେ। ତାପରେ ସେ ଚିତ୍ ହୋଇ ପଡ଼ିଯାଇଛି ଗୋଟିଏ ପାଖରେ। ତାର ନିଶ୍ୱାସ ପ୍ରଶ୍ୱାସ ଦ୍ରୁତ ବେଗରେ ପ୍ରବାହିତ ହୋଇଛି। ପ୍ରଥମ କୋନ୍‌ରେ ଆଲୋକ ଲିଭିଯାଇ ଦ୍ୱିତୀୟ କୋନରେ ଆଲୋକ ଆସିଲା। ଦେଖାଗଲା ସେଠି ବସିଛନ୍ତି ସାଧୁଚରଣ ଓ ଆଦିତ୍ୟ ପ୍ରତାପ।]

ସାଧୁଚରଣ—ଆପଣ ଜମା ଚିନ୍ତା କରନ୍ତୁ ନି ଯେଉଁ ପର୍ଯ୍ୟନ୍ତ ଅନ୍ତତଃ ଆମ ପାର୍ଟିର ଗୁଡ଼ ଉଇଲ୍ ଆପଣଙ୍କ ପ୍ରତି ଅଛି। ଆପଣମାନଙ୍କ କାମ ନକଲେ ଆମେମାନେ ପୁଣି ଆଉ ନିର୍ବାଚନରେ ଜିତି ଆସି ପାରିବୁ ତ !

ଆଦିତ୍ୟ—କାଲି ସଭାରେ କଳା ପତାକା ଦେଖେଇ ପାଟିଗୋଳ କରି ସେମାନେ ହେଲେ ଚୁପ୍ ରହିଥାନ୍ତେ। ରାତି ଅଧରେ ଗେଷ୍ଟ ହାଉସ ସାମ୍ନାରେ ପାଟିଗୋଳ ହଲ୍ଲା...ଓଃ

ସାଧୁଚରଣ ଯେମାନେ ବୋଧେ କେଉଁ ସୂତ୍ରରୁ ଜାଣିଗଲେ ଆମେ ନାଇଟ୍ କ୍ଲବ୍ ଯେଠି କରୁଛେ ।

ଆଦିତ୍ୟ – ଆଶ୍ଚର୍ଯ୍ୟ ! ଏମାନଙ୍କୁ ପାଶିବା କଠିନ ହୋଇ ପଡ଼ିଲା । (ଦୃଢ଼ କଣ୍ଠରେ) ବାରମ୍ବାର ମୋ ପଛରେ ଲାଗିଛନ୍ତି । ମୋ ମାନ ସମ୍ମାନକୁ ସେମାନେ ଧୂଳିରେ ମିଶେଇ ଦବାକୁ ଚାହାନ୍ତି ।

ସାଧୁଚରଣ—ଫାକ୍ଟ୍ରି ଭିତରୁ କେଉଁ ଲେବରର ହୁଏତ ଆମଙ୍କୁ ନଚେତ୍ ଶ୍ରମିକ ବସ୍ତିରୁ ଉଡ଼େଇ ଆଣିଥିବା ସେ ଝିଅର ପିଛା କରୁଥିଲା ··ଝିଅଟା ସୁନ୍ଦରୀ ନିଶ୍ଚୟ ତେବେ···

ଆଦିତ୍ୟ – ସେ ତା ଆଖି ଦିଟା ପୂର୍ବରୁ ହରେଇଥିଲା ।

ସାଧୁଚରଣ – ଓ···ଆଚ୍ଛା···ଆଚ୍ଛା

(କଲିଂ ବେଲ୍ ଟିପିଲେ ଆଦିତ୍ୟ ପ୍ରତାପ)

(ଦରୱାନ ଆସିଲା, ଆଦିତ୍ୟ ମ୍ୟାନେଜର ବାବୁଙ୍କ ଖବରଦିଅ)

ଦରୱାନ—ଡ଼ାକ ଦଉଛି ସାର୍ (ସେ ଚାଲିଗଲା)

ସାଧୁଚରଣ—ଆପଣଙ୍କ ପୂର୍ବ ପୁରୁଷ ରାଜା ଥିଲେ । ଆଜି ଗଣତନ୍ତ୍ର ଯୁଗରେ ସମସ୍ତ ବଦଳିଛି ଆମେ ସବୁ ସିନା ଲୋକ ପ୍ରତିନିଧି ହୋଇ ବସିଛୁ କିନ୍ତୁ ଶାସନ ଡୋରି ତ ସବୁ ଆପଣଙ୍କ ହାତରେ ! କାରଣ ଆପଣମାନଙ୍କ ପୁଞ୍ଜି ଅଛି । ଆପଣମାନେ ଅର୍ଥର ଜୋରରେ ଯାହା ପାରିବେ କରିପିବେ ଆମେ ତ ଆପଣମାନଙ୍କୁ ସମର୍ଥନ କରିବୁ ବା କରିବୁ । ନ ହେଲେ ଚଳିବ କିପରି ? ରାଜତନ୍ତ୍ର ଓ ଗଣତନ୍ତ୍ର ସବୁ ତନ୍ତ୍ରଗୁଡ଼ାକ ଏକା । ଆଗରୁ ଆଇନ୍ ହଉଥିଲା ରାଜାଙ୍କ ମର୍ଜିରେ, ଏବେ ହେଉଛି ଆମ୍ଭମାନଙ୍କ ମର୍ଜିରେ···ରାଜତନ୍ତ୍ରର ବିଲୋପ ହେଲା ସିନା କିନ୍ତୁ ଅର୍ଥ ତନ୍ତ୍ରର ଯେଉଁ ବିରାଟ ନାଗଫାଶ ତାକୁ ଛିଣ୍ଡେଇବା କଣ ଏଡ଼େ ସହଜ କଥା । (ଶେଷ ଆଡ଼କୁ ସେ ହସିଲେ ଆତ୍ମ ପ୍ରସାଦର ହସ ।)

ଆଦିତ୍ୟ – ଲୋକ କହନ୍ତି ଏଠି ବହୁବର୍ଷ ପୂର୍ବେ ସାଧୁଚରଣ ନାମରେ ଜଣେ ବିଶିଷ୍ଟ ବିଦ୍ରୋହୀନେତା ଜନ୍ମ ନେଇଥିଲେ ।

ସାଧୁଚରଣ – (ଆତ୍ମ ପ୍ରସାଦର ହସି ହସି) ହାଃ···ହାଃ···ଏଠିକାର କିମ୍ବଦନ୍ତୀ··· ଲୋକକଥା । ବୋଧେ ମୋର ବାପା ବୋଉ ମୋତେ ସେହି ନାଁ ଦେଇଥିଲେ ମୁଁ ଭବିଷ୍ୟତରେ ଜଣେ ନେତା ହେବି ବୋଲି ।

ତେବେ କମ୍ପଦନ୍ତୀର ସେ ସାଧୁଚରଣ ବୋକା ଥିଲା ନିଶ୍ଚୟ । କ'ଣ ବୁଝିଲେ ନାଁ—ପ୍ରଚଳିତ ଶାସନ ବ୍ୟବସ୍ଥା ବିରୁଦ୍ଧରେ ବିଦ୍ରୋହ କରିବା କମ୍ପ ଠିକ୍ ନୁହେଁ । ବିଦ୍ରୋହ ନୁହେଁ ବୁଝିଲେ - ଫାଇଦା, ମୁନାଫା ଏସବୁ ଦରକାର ·· (କଥାର ଗତି ବଦଳାଇ) ଫାକ୍ଟ୍ରି ସଂକ୍ରାନ୍ତରେ ଆମର ଆଲୋଚନା ତ ସବୁ ସରିଛି । ଆପଣଙ୍କ ପଛରେ ମୋର ସମର୍ଥନ ରହିଛି । ଆଉ ନେତା କଣ୍ଠଦାସ । ତା ବାବଦରେ ଇନସ୍‌ପେକ୍ଟରଙ୍କ ସହ ମୁଁ କଥା ହୋଇଛି । ଦରକାର ପଡ଼ିଲେ ଏସ୍: ପି: ଙ୍କୁ ମଧ୍ୟ ଟେଲିଫୋନ୍ କରିବ ।

ଆଦିତ୍ୟ— ସେ ଅନ୍ନପୂର୍ଣ୍ଣୀଟା କଣ୍ଠ ଦାସର ସ୍ତ୍ରୀ ।

ସାଧୁଚରଣ— ଓ···କଣ୍ଠଦାସର ସ୍ତ୍ରୀ ।

(ପ୍ରବେଶ କଲେ ମ୍ୟାନେଜର)

ମ୍ୟାନେଜର— (ଆଦିତ୍ୟ ପ୍ରତାପଙ୍କ କାନରେ ଫୁସ୍ ଫୁସ୍ କରି)

ସାର୍ ସବୁ ବ୍ୟବସ୍ଥା ସରିଛି ଆମ ଲୋକେ ମାଲତୀର ଲାସ୍‌ଟାକୁ ନେଇ ପାଖ ଜଙ୍ଗଲରେ ଫିଙ୍ଗି ଦେଇଥିବେ । ତା ପାଖରେ ବିଷ ବୋତଲ ଇତ୍ୟାଦି ଥୋଇ ଦେବା ପାଇଁ ତାଙ୍କୁ କୁହାଯାଇଛି । ଏଥିରୁ ପ୍ରମାଣିତ ହୋଇଯିବ···

ଆଦିତ୍ୟ—କଣ୍ଠଦାସ ଆରେଷ୍ଟ ହେଲା ପରେ ସେ ଆତ୍ମହତ୍ୟା କରିଛି ।

ମ୍ୟାନେଜର—ସେ ଦୁଇଥର ଆତ୍ମହତ୍ୟାର ଉଦ୍ୟମ କରୁଥିଲା ବୋଲି ଜଣେ ମଧ୍ୟ ସାକ୍ଷୀ ଦେବ ।

ସାଧୁଚରଣ—ଟିକେ ଗୋଳମାଳ ହୋଇଗଲା ।

ଆଦିତ୍ୟ—ଆମର ସମ୍ମାନ ବଞ୍ଚାଇବା ପାଇଁ ଆଉ କଣ କରାଯାଇ ପାରିଥାନ୍ତା ଆଜ୍ଞା ।

ସାଧୁଚରଣ—ଠିକ୍ ଅଛି ଉପରୁ ପ୍ରେସର୍ ପକାଯିବ ।

(ଏହି ସମୟରେ ଟେଲି ଫୋନ୍‌ରେ ରିଂ ହେଲା ଧରିଲେ ଆଦିତ୍ୟ ପ୍ରତାପ)

ଆଦିତ୍ୟ ପ୍ରତାପ—ହାଲୋ···ହଁ···ଏଇଠି ଅଛନ୍ତି ଡ଼ାକି ଦେଉଛି (ସାଧୁଚରଣଙ୍କୁ) ଆପଣଙ୍କର ଟେଲିଫୋନ ଆଜ୍ଞା ।

ସାଧୁଚରଣ—(ରିସିଭର୍ ଧରି) ସାଧୁଚରଣ ସ୍ପିକିଂ·····ହଁ ମୁଁ ମୋ ଏଣିଆରୁ କହୁଛି । ଇଣ୍ଡଷ୍ଟ୍ରିଆଲିଷ୍ଟ ଆଦିତ୍ୟ ପ୍ରତାପଙ୍କ ବଂଗୋଳୁ···କଣ କଣ ହେଲା

ଏଁ ବହିଷ୍କାର କରିଗଲା ··· ଗୁରୁତର ଅଭିଯୋଗ ? (ସେ ରିସିଭର ରଖି ଦେଲେ ତାଙ୍କ ମୁହଁ କଳା ପଡ଼ିଯାଇଥିଲା) ।

(ଆଦିତ୍ୟ ପ୍ରତାପଙ୍କ ପାଖକୁ ଯାଇ) ମୁଁ ଆସୁଛି କହିଲେ । ତାପରେ ସେ ତାଙ୍କ କାନ ପାଖରେ ଆସ୍ତେ କଣ କହି ଚାଲିଗଲେ । ଆଦିତ୍ୟ ପ୍ରତାପ ଠିଆହୋଇ ଚାହିଁଥିଲେ ତାଙ୍କ ଯିବା ବାଟକୁ )

ଆଦିତ୍ୟ—(ମ୍ୟାନେଜରଙ୍କୁ) ସାଧୁବାବୁଙ୍କୁ ବୋଧେ ତାଙ୍କ ଦଳରୁ ବହିଷ୍କାର କରିଗଲା ।

ମ୍ୟାନେଜର—ତା ହେଲେ ତ ବଡ଼ ଅସୁବିଧା ହେଲା ସାର୍ ।

ଆଦିତ୍ୟ—ଅସୁବିଧା···ନାଁ । ଅସୁବିଧା କଣ ? ଏଇ କଥା ବୁଝି ନେଇ ଗୋଟେ ଫାକ୍ଟ୍ରିର ମ୍ୟାନେଜର ହୋଇଛନ୍ତି ଆପଣ ? ଆଦିତ୍ୟ ପ୍ରତାପ ମହେନ୍ଦ୍ର ବାହାଦୁର ବ୍ୟକ୍ତି ପୂଜା କରେନା ସେ ପୂଜା କରେ କ୍ଷମତାକୁ । ଅର୍ଥବଳରେ ସବୁ କ୍ଷମତାକୁ ସେ କ୍ରୀତ କରିବାକୁ ଚାହେଁ । ହାଃ ହାଃ ହାଃ (ସେ ଉନ୍ମାଦଙ୍କ ପରି ହସିବାକୁ ଲାଗିଲେ ) ସାଧୁବାବୁ ଗଲେ, ପୁଣି ତ କିଏ ଆସିବ ? ତାଙ୍କୁ ପୁଣି କ୍ୟାପଚର୍ କରାଯିବ ଟଙ୍କା ବଳରେ ହାଃ···ହାଃ···ହାଃ··· ଆଦିତ୍ୟ ପ୍ରତାପ ପରାଜୟକୁ ସ୍ୱୀକାର କରେନା । ତା ଦେହରେ ରାଜରକ୍ତ ପ୍ରବାହିତ ।

(ଆସିଲେ ସରପଞ୍ଚ ଲୋଚନ ମିଶ୍ର ଓ ମାନଧାତା)

ଲୋଚନ—ଇଏ କଣ ହେଲା ? ସାଧୁବାବୁ କଣ ଚାଲିଗଲେ ।

ଆଦିତ୍ୟ—(ହସି) ଜିଲ୍ଲାରୁ ଡାକରା ପାଇ ସେ ରାଜଧାନୀ ଚାଲିଗଲେ । କିଏ ଜାଣେ କିଛି ଗୁରୁତର ଅଭିଯୋଗ ହୋଇଥିବ ?

ଲୋଚନ—ଓଃ···କେତେ ଆଶା କରିଥିଲୁ ଗାଁ ପାଇଁ ପଦେ ସୁପାରିଶ କରିଥାନ୍ତେ । ପୁଣି ମୋ ପଞ୍ଚାୟତର ମହିଳା ସମିତି କେଆର ବିଲ୍ଡିଂ ଏସବୁ···

ମାନଧାତା—ଗ୍ରେଟ୍; ନିଖିଳ ଉତ୍କଳ ସାଧୁସନ୍ଥ ସମ୍ମିଳନୀ ସାଧୁବାବୁଙ୍କ ଅମଳରେ ହୋଇପାରିଲାନି ଭାଗ୍ୟ !

ଲୋଚନ—ଆଉ ଆପଣଙ୍କ ସ୍ୱାଧୀନତା ସଂଗ୍ରାମୀ ଭତ୍ତା ।

ମାନଧାତା—କିଏ ଜାଣିଥିଲା ଏମିତି ଅକାଳ ଚଡ଼କ ପଡ଼ିବ ।

ଆଦିତ୍ୟ—(ବିରକ୍ତ ହୋଇ) ଓଃ ଆପଣମାନେ ସମସ୍ତେ ଯାଆନ୍ତୁ ଆରମ୍ଭ ହେଲା ଅରଣ୍ୟ ରୋଦନ। ବିଧାୟକ ସାଧୁବାବୁଙ୍କ ଅନୁପସ୍ଥିତିରେ ଦେଶ ଚାଲିଛି, ଚାଲିବ କିଛି ଭାସିଯିବ ନାହିଁ। ଏତେଟା ବିକଳ ହେଲେ ଚଳିବନି। ପୁଣି ଆଉମାନେ ଆସିବେ···ଯିବେ···ହାଃ ହାଃ ··

[ହସପରେ ସେ ଅସ୍ୱାଭାବିକ ଭାବରେ ନୀରବ ହୋଇଗଲେ। ମାନଧାତା ଓ ଲୋଚନ ମିଶ୍ର ଏବଂ ମ୍ୟାନେଜର ପରସ୍ପର ମୁହଁ ଚାହିଁ ହୋଇ ପ୍ରତ୍ୟାବର୍ତ୍ତନ କଲେ। କିଛି ସମୟ ନୀରବରେ କଟିଗଲା ପରେ ସିଗାରେଟ୍‌ରେ ନିଆଁ ଧରାଇଲେ ଆଦିତ୍ୟ ପ୍ରତାପ। ପ୍ରବେଶ କରିଛି କଣ୍ଣୁଦାସ। ମୁହଁ ସାରା ଦାଢ଼ି। ସେ ଦେଖୁଛି ଭୟଙ୍କର। ଚିତ୍କାର କରି ଠିଆ ହୋଇ ପଡ଼ିଛନ୍ତି ଆଦିତ୍ୟ ପ୍ରତାପ।]

ଆଦିତ୍ୟ—କିଏ ?

କଣ୍ଣୁଦାସ—ଚିହ୍ନି ପାରୁ ନାହାନ୍ତି ମୁଁ କଣ୍ଣୁଦାସ। ଶ୍ରମିକ ନେତା, ଜେଲରେ ଥିଲି। ଆଜ କିନ୍ତୁ ଆସିବାକୁ ପଡ଼ିଲା।

ଆଦିତ୍ୟ—(ଚିତ୍କାର କରି) ଚାଲିଯା, ଚାଲିଯା ଏଠୁ। ଦରୱାନ, ଦରୱାନ।

କଣ୍ଣୁଦାସ—ଚାଲିଯିବାକୁ ଆସିନି ଆଜ୍ଞା। ଆସିଛି କଡ଼ା ଗଣ୍ଡା କରି ଆଦାୟ କରିବାକୁ। ଆପଣଙ୍କ ଏ କୋଠାରେ ଏବେ କେହି ନାହାନ୍ତି। ଆଉ ଦରୱାନ୍‌ଟା···ସେଠି ମୋ ଛୁରିମାଡ଼ରେ ଅଚେତ ହୋଇ ପଡ଼ିଛି।

ଆଦିତ୍ୟ—କଣ ଯିବୁ ନା ନାହିଁ ?

କଣ୍ଣୁ—ନା (ସେ ଧୀରେ ଧୀରେ ଅଗ୍ରସର ହେଉଥିଲା ଛୁରି ଧରି। ଆଦିତ୍ୟ ପ୍ରତାପ ପଛକୁ ହଟିଯାଇ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଠିଆ ହେଲେ) କହନ୍ତୁ ମାଳତୀ କାହିଁ ?

ଆଦିତ୍ୟ—ମାଳତୀ ! ମାଳତୀ କିଏ ?

କଣ୍ଣୁ—ଜମା ଜାଣି ନାହାନ୍ତି। କୁକୁର ଦଳ। ଗୋଟାଏ ଅସହାୟ ନାରୀର ମାଂସରେ ଭୋଜି କରି ସାରିଲା ପରେ ପ୍ରଶ୍ନ କରୁଛନ୍ତି ମାଳତୀ କିଏ ? (ଚଡ଼ା ଗଳାରେ) କହନ୍ତୁ ମାଳତୀକୁ·· କାହିଁକି ଆପଣମାନେ ଏମିତି ନିର୍ମମ ଭାବରେ··ଜବାବ ଦିଅନ୍ତୁ।

ଆଦିତ୍ୟ – (ଫୋନ୍ ଉଠାଇବାକୁ ଯାଉଥିଲେ) ମୁଁ ତୋତେ ପୋଲିସ୍‌ରେ ହାଣ୍ଡ୍‌ଓଭର୍ କରିବି ।

କର୍ଣ୍ଣ—ପୋଲିସ, ଲାଠି, ବନ୍ଧୁକ; ହାଃ···ହାଃ···ହାଃ···ମୁ ଏସବୁକୁ ଖାତିର କରେନା ଆଦିତ୍ୟ ପ୍ରତାପ । ଜେଲରେ ଥାଇ ମୁଁ ମଧ୍ୟ ଗୁପ୍ତ ସଂଗଠନ ଚଳେଇଥିଲି । ମୁଁ ଆପଣଙ୍କୁ ··ଆଉ ଆପଣଙ୍କର ସେଇ ପୁଞ୍ଜିର ସାମ୍ରାଜ୍ୟକୁ ଧ୍ୱଂସ କରି ଦେବାକୁ ଚାହେଁ । ନ ହେଲେ ମୁଁ, ମୋର ପରି ଶହ ଶହ କର୍ଣ୍ଣଦାସ ଶହ ଶହ ମାଳତୀର ଆତ୍ମାକୁ କେହି ଶାନ୍ତି ଦେଇ ପାରିବେନି, ନା କେହି ଶାନ୍ତି ପାଇବେନି, (ଛୁରୀ ଉଠେଇ ଆକ୍ରମଣ କଲାବେଳେ ପଛରୁ ଫାୟାରିଂ ହେଲା । ଲେଟି ପଡ଼ିଲା ସେଠି କର୍ଣ୍ଣଦାସ । ପଶି ଆସିଲେ ଇନ୍‌ସ୍‌ପେକ୍ଟର ।)

ଇନ୍‌ସ୍‌ପେକ୍ଟର –ଠିକ୍ ସମୟରେ ଆସି ଯାଇଛୁ ।

କର୍ଣ୍ଣଦାସ –'ଗୁଳିର ଆଘାତରେ ଦେହ ରକ୍ତାକ୍ତ ହୋଇଥାଏ ।) ଆଃ···ଆଃ ··

ଇନ୍‌ସ୍‌ପେକ୍ଟର – (ଆଦିତ୍ୟ ପ୍ରତାପଙ୍କୁ ଚାହିଁ) ଅସମ୍ଭବ କୌଶଳ କରି ଜେଲ ଡେଇଁ ଚାଲି ଆସିଥିଲା ଲୋକଟା । ରାତିସାରା ଲୁଚି ଲୁଚି ଫୋର୍ସ ଧରି ମୁଁ ତାର ପିଛା କରୁଥିଲି । ଉପରୁ ଆଦେଶ ଥିଲା ଲୋକଟାକୁ ଜୀବିତ କିମ୍ବା ମୃତ ଯେମିତି ଧରେଇଦେବା ଦରକାର । ମୁହୂର୍ତ୍ତେ ଡେରି କରିଥିଲେ କଣ ଯେ ଘଟି ଯାଇ ନଥାନ୍ତା । ଦରୱାନ୍‌ଟା ବି ବେହୋସ ହୋଇ ପଡ଼ିଛି । ବଞ୍ଚିଛି କି ନା କିଏ ଜାଣେ ?

ଆଦିତ୍ୟ—ଆପଣଙ୍କୁ କେମିତି ଯେ ଧନ୍ୟବାଦ ଦେବି ମୁଁ ଭାଷା ପାଉନି ଇନ୍‌ସ୍‌ପେକ୍ଟର···

କର୍ଣ୍ଣଦାସ—(ସେମିତି ପଡ଼ିରହି) ନା ପାରିଲିନି···ଭାବିଥିଲି ଆଦିତ୍ୟ ପ୍ରତାପର ଗର୍ବ ଅହମିକାକୁ ମାଟିରେ ମିଶେଇ ଦେବି । ହତ୍ୟାର ପ୍ରତିଶୋଧ ନେବି । ପାରିଲିନି··· ଓଃ···କିନ୍ତୁ ମନେରଖ ଆଦିତ୍ୟ ପ୍ରତାପ କର୍ଣ୍ଣଦାସ ନ ବଞ୍ଚିଲେ ବି ତାର ରକ୍ତ ଆହ୍ମ ମଧ୍ୟରୁ ଅନେକ···ଅନେକ କର୍ଣ୍ଣଦାସ ଜନ୍ମନେବେ । ସେମାନେ କରି ଚାଲିବେ ଅନ୍ୟାୟ ବିରୁଦ୍ଧରେ ଶପଥ ବଦ୍ଧ ସଂଗ୍ରାମ···ସେ ଦିନକୁ ଅପେକ୍ଷା କର ଆଦିତ୍ୟ ପ୍ରତାପ···ଅପେକ୍ଷା କର·· ଆଃ···ଆଃ ··[ସେ ଛଟପଟ ହୋଇ ସ୍ଥିର

ହୋଇଗଲା । ଦ୍ୱିତୀୟ କୋଣରେ ଆଲୋକ ଲିଭିଗଲା । ଆଲୋକ ଆସିଲା ପ୍ରଥମ କୋଣରେ । ସମ୍ମିଳିତ କଣ୍ଠସ୍ୱରର ଝଙ୍କାର ଶୁଭୁଥିଲା । ପଶ୍ଚାତ୍ ଘରକୁ ଦେଖାଗଲା ନବୋଦିତ ସୂର୍ଯ୍ୟ ଓ ତା'ର ଲାଲ କିରଣ । ଦାନବ ଲୋକଟି ଠିଆ ହୋଇଥିଲା । ହାତରେ ତାର ଜଳନ୍ତା ମଶାଲ । ସେ ଏବେ ଚିତ୍କାର କରୁଥିଲା ଗଲା ଫଟେଇ । ମଶାଲ ଧରି ସେ ଗୋଟିଏ ପ୍ରାନ୍ତକୁ ଆସିଲା । ପୁଣି ଅନ୍ୟ ପ୍ରାନ୍ତକୁ ଗଲା ଚିତ୍କାର କରି । ଯେପରି କି ସେ ଯୁଦ୍ଧ କରିବାକୁ ଚାହେଁ, ଧ୍ୱଂସ କରିବାକୁ ଚାହେଁ କିଛି ଭାଙ୍ଗି ଦେବାକୁ ଚାହେଁ ।

ବାଦ୍ୟଯନ୍ତ୍ରର ସମ୍ମିଳିତ ଝଙ୍କାର ମଧ୍ୟରେ ଚତୁର୍ଦ୍ଦିଗ ଅନ୍ଧକାର ହୋଇଗଲା ।]

